# ଉତ୍କଳମଣି ଗୋପବନ୍ଧୁ

ସତ୍ୟନାରାୟଣ ମହାପାତ୍ର



ଦାଶରଥି ବୁକ୍ ଷ୍ଟୋର୍

ବ୍ରହ୍ମପୁର-୧

# ଉତ୍କଳମଣି ଗୋପବନ୍ଧୁ

ଲେଖକ : ଶ୍ରୀ ସତ୍ୟନାରାୟଣ ମହାପାତ୍ର
ହିଞ୍ଜିଳିକାଟୁ, ଗଞ୍ଜାମ

ପ୍ରକାଶକ : ଭାସ୍କରଚନ୍ଦ୍ର ପାତ୍ର
ବିଜୟ ବୁକ୍ ଷ୍ଟୋର, ବ୍ରହ୍ମପୁର-୧, ଗଞ୍ଜାମ



ପ୍ରଥମ ସଂସ୍କରଣ : ଦଶହରା, ୧୯୭୬
ଦ୍ୱିତୀୟ ସଂସ୍କରଣ : ବସନ୍ତ ପଞ୍ଚମୀ, ୧୯୮୨
ତୃତୀୟ ସଂସ୍କରଣ : ମହାବିଷୁବ ସଂକ୍ରାନ୍ତି, ୧୯୯୦
ଚତୁର୍ଥ ସଂସ୍କରଣ : ଗଙ୍ଗାପୂର୍ଣ୍ଣିମା ୧୯୯୩

ମୁଦ୍ରଣ : ସନ୍ତୋଷ ପ୍ରିଣ୍ଟରସ୍, ବ୍ରହ୍ମପୁର-୯

ପ୍ରଚ୍ଛଦ : ଶ୍ରୀ ସୀତାକାନ୍ତ ମହାପାତ୍ର

ମୂଲ୍ୟ : [redacted] ଟ ୨୫-୦୦

## Utkalmani Gopabandhu

(A short Biography)

Written by : **Sri Satyanarayana Mahapatra**
Hinjilicut, Ganjam

Published by : **Sri Bhaskar Chandra Patro**
Bijoy Book Store
Berhampur-1, Ganjam



First Impression : **Dasahara, 1976**

Second Impression : **Basanta Panchami, 1982**

Third Impression : **Mahabishuva Sankranti, 1990**

Fourth Impression : **1993**

Printed at : **Santosh Printers**
Berhampur—9, Ganjam

**Price** : [redacted] **Rs. 25·00**

## ଏଇ ଲେଖକଙ୍କ କେତୋଟି ଜୀବନୀମୂଳକ ଗ୍ରନ୍ଥ

ସର୍ଦ୍ଦାର ବଲ୍ଲଭଭାଇ
ପ୍ରିୟଦର୍ଶିନୀ ଇନ୍ଦିରା
ରାଜା ରାମମୋହନ ରାୟ
କବିଗୁରୁ ରବୀନ୍ଦ୍ର
ନାଇଟେଙ୍ଗେଲ୍ ସରୋଜିନୀ
ଜାମ୍‌ସେଦ୍‌ଜୀ ଟାଟା
ନେତାଜୀ ସୁଭାଷ
ସାମ୍ବାଦିକ ଶଶିଭୂଷଣ
ସଂସ୍କାରକ ଶ୍ରୀବସ୍ତ ପଣ୍ଡା
ଦେଶସେବକ ଲକ୍ଷ୍ମୀନାରାୟଣ
ବ୍ୟାସକବି ଫକୀରମୋହନ
କବିବର ରାଧାନାଥ
ପଲ୍ଲୀକବି ନନ୍ଦକିଶୋର
କବିସୂର୍ଯ୍ୟ ବଳଦେବ
ସ୍ୱଭାବକବି ଗଙ୍ଗାଧର
ପଣ୍ଡିତ ଗୋଦାବରୀଶ
ମନସ୍ୱୀ ନୀଳକଣ୍ଠ
ଲାଲା ଲଜପତରାୟ
ବାଲ୍ ଗଙ୍ଗାଧର ତିଳକ
ବିପିନଚନ୍ଦ୍ର ପାଲ୍
ପାରଳା ମହାରାଜା
ସଂଗ୍ରାମୀ ସୁରେନ୍ଦ୍ର ସାଏ
ବଙ୍ଗକେଶରୀ ବିପିନ୍‌ଚନ୍ଦ୍ର

# ମୋ କଥା

(ପ୍ରଥମ ସଂସ୍କରଣ ପାଇଁ)

ଗୋପବନ୍ଧୁ ଓଡ଼ିଶା ଓ ଓଡ଼ିଆ ଲୋକଙ୍କ ନିକଟରେ କେବଳ ଜଣେ ବ୍ୟକ୍ତିବିଶେଷ ନୁହନ୍ତି—ଏକ ବିରାଟ ଅନୁଷ୍ଠାନ । ତାଙ୍କ କର୍ମବହୁଳ ଜୀବନୀକୁ କେନ୍ଦ୍ରକରି ଯେତେ ଅଧିକ ଲେଖାଯାଇପାରିବ ବା ପ୍ରକାଶିତ ହେବ (ଗୋପବନ୍ଧୁ ଜନ୍ମ ଶତବାର୍ଷିକୀ ଅବସରରେ ଅନ୍ତତଃ) ଏ ଜାତି ପକ୍ଷରେ ସେତିକି ମଙ୍ଗଳକର ହେବ ବୋଲି ମୋର ବ୍ୟକ୍ତିଗତ ମତ ।

ସେଇଥିପାଇଁ ମୋର ଏ ଉଦ୍ୟମ ।

ଏ ଉଦ୍ୟମରେ ଯଦି ସାମାନ୍ୟତମ ବିଭ୍ରାନ୍ତି ଥାଏ, ସୁଧୀ ପାଠକବୃନ୍ଦ ତାହା ମୋ ଦୃଷ୍ଟିକୁ ଆଣିଲେ କୃତଜ୍ଞ ହୁଅନ୍ତି ।

"ଉତ୍କଳମଣି ଗୋପବନ୍ଧୁ"ର ପ୍ରକାଶନରେ ମତେ ଯେଉଁମାନେ ବିଭିନ୍ନ ଦିଗରୁ ସାହାଯ୍ୟ କରିଛନ୍ତି ସେମାନେ ହେଲେ କ୍ୟାପ୍‌ଟେନ୍ ପ୍ରଭାକର ଶତପଥୀ, ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ବନ୍ଧୁ ଅଧ୍ୟାପକ ଶ୍ରୀ ନାରାୟଣ ପଣ୍ଡା, ଇଂଜନପୁର ଶ୍ରୀ ନୃସିଂହାନନ୍ଦ ପାଣିଗ୍ରାହୀ, ଶ୍ରୀ ହୃଦୟରଞ୍ଜନ ଶତପଥୀ ଓ କୁମାରୀ ସୌଦାମିନୀ ମହାପାତ୍ର ।

ଏବଂ

ଏହାର ପ୍ରକାଶକ ଶ୍ରୀ ଭାସ୍କରଚନ୍ଦ୍ର ପାତ୍ର ଓ ସ୍ୱାଧୀନ ପ୍ରେସର ପରିଚାଳକ ତଥା ଏ ବହିର ପ୍ରୁଫ୍ ସଂଶୋଧକ ଶ୍ରୀ ଅଭିମନ୍ୟୁ ପାଢ଼ୀ ।

ଏ ସମସ୍ତଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

**ସତ୍ୟନାରାୟଣ ମହାପାତ୍ର**
କୋରାପୁଟ
ଦୀପାବଳୀ, ୧୯୭୫ ।

୨ୟ ସଂସ୍କରଣ ପାଇଁ

ଉତ୍କଳମଣି ଗୋପବନ୍ଧୁ ପ୍ରକାଶ ପାଇବା ପରେ ପରେ ମାତ୍ର ଗୋଟିଏ ବର୍ଷ ପୂରିବା ହେବା ବହୁପୂର୍ବରୁ ପ୍ରଥମ ସଂସ୍କରଣ ଶେଷ ହୋଇଯିବା ସମ୍ବାଦ ମୋର ଲେଖକ ଜୀବନକୁ ଉତ୍ସାହିତ କରିଛି ନିଶ୍ଚୟ । ତେଣୁ ସାମାନ୍ୟ ପରିବର୍ତ୍ତନ ଓ ପରିବର୍ଦ୍ଧନ କରି ତାହାର ଦ୍ୱିତୀୟ ସଂସ୍କରଣ ପାଇଁ ପ୍ରସ୍ତୁତ ହୋଇ ଯାଇଥିଲି । କିନ୍ତୁ ସେହି କାର୍ଯ୍ୟ ବହି ପ୍ରକାଶନକୁ ତ୍ୱରାନ୍ୱିତ କରିବା ପାଇଁ ମୁଁ ଯେତିକି ଇଚ୍ଛାକଲି ତାହା ସେତିକି ମନ୍ଥର ହୋଇ ଯାଇଥିଲା । ସେଥିପାଇଁ ଅନ୍ୟ କାହା ଅପେକ୍ଷା ସମୟକୁ ହିଁ ଦୋଷୀ ସାବ୍ୟସ୍ତ କରିଯାଇପାରେ ।

ସେ ଯାହାହେଉ ବହିଟିର ପୁନଃ ପ୍ରକାଶନ ଅବସରରେ ବନ୍ଧୁ ଶ୍ରୀ ରଘୁନନ୍ଦନ ପାଣିଗ୍ରାହୀ ଓ ଶ୍ରୀ ପ୍ରଦ୍ୟୋତକୁମାର ମହାପାତ୍ରଙ୍କୁ ଧନ୍ୟବାଦ ଜଣାଇବା କର୍ତ୍ତବ୍ୟ ବୋଲି ମନେକରୁଛି ।

ସତ୍ୟନାରାୟଣ ମହାପାତ୍ର
କଟକ
ବସନ୍ତ ପଞ୍ଚମୀ, ୧୯୮୨

ମାନବ ଜୀବନ ନୁହଇ କେବଳ
ବର୍ଷ, ମାସ, ଦିନଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।

❊ ❊ ❊

କାପୁରୁଷ ପରି ମରିବା ଜଗତେ
ନୁହେ ନର ପଉରୁଷ
ପରହିତ ପାଇଁ ମରେ ଯେ ମହତେ
ସେହି ଏକା ସୁପୁରୁଷ ।

# ବିଷୟ ସୂଚନା





॥ ଏକ ॥

# ମାନବ ଜୀବନ ନୁହଇ କେବଳ ବର୍ଷ ମାସ ଦିନ ଦଣ୍ଡ

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ଏଥିଲା କବି, ଲେଖକ, ବକ୍ତା, ରାଜନୀତିଜ୍ଞ, ସାମ୍ବାଦିକ ଓ "ସମାଜ" ସମ୍ବାଦପତ୍ରର ପ୍ରତିଷ୍ଠାତା, ଦେଶସେବକ ତଥା ସର୍ବୋପରି ଉଗ୍ର ଜାତୀୟତାବାଦୀ ଯୁଗପୁରୁଷ ଗୋପବନ୍ଧୁଙ୍କ ଅନ୍ତରର ନିଗୂଢ଼ତମ ପ୍ରଦେଶର ବାର୍ତ୍ତା । ଯେତେବେଳେ ଓଡ଼ିଆ ଜାତି ତା'ର ସତ୍ତା ହରାଇ ବସୁଥିଲା, ଓଡ଼ିଆ ପ୍ରାଣରୁ ଯେତେବେଳେ ଜାତୀୟତା ଭାବ କ୍ରମେ କ୍ରମେ ବିଲୀନ ହେବାକୁ ଆରମ୍ଭ କରିଥିଲା, ସମାଜର ଛତ୍ରେ ଛତ୍ରେ ବିଭିନ୍ନ କୁସଂସ୍କାର ପୂରି ରହିଥିଲା, ଓଡ଼ିଶାର ବିଭିନ୍ନ କୋଣରୁ ବଙ୍ଗଳା, ବିହାରୀ ଓ ତେଲୁଗୁ ଜାତି ପ୍ରତ୍ୟେକେ ସେମାନଙ୍କର ଭୌଗୋଳିକ ସୀମା ବିସ୍ତାର କରିବା ସଙ୍ଗେ ସଙ୍ଗେ ଭାଷାର ପ୍ରାଧାନ୍ୟ ପ୍ରତିଷ୍ଠା କରିବା ଲାଗି ଅଦମ୍ୟ ଉଦ୍ୟମ ଆରମ୍ଭ କରିଥିଲେ, ସେଇଭଳି ଏକ ସଙ୍କଟସଙ୍କୁଳ ମୁହୂର୍ତ୍ତରେ ଉତ୍କଳର ଅନ୍ଧାରି ମୂଲକକୁ ଏକ ଉଜ୍ଜ୍ୱଳ ମଣିର ଆଲୋକରେ ଉଦ୍‌ଭାସିତ କରିଥିଲେ ବାଗ୍ମୀ, ପଣ୍ଡିତ ଗୋପବନ୍ଧୁ ଦାସ ।

ନିଃସ୍ୱାର୍ଥପର ଭାବେ ଜାତିର ସେବା କରିବା ଥିଲା ତାଙ୍କ ଜୀବନର ଚରମ ତଥା ପରମ ଲକ୍ଷ୍ୟ । ଅବହେଳିତ ଓ ବନ୍ୟା, ବାତ୍ୟା, ଦୁର୍ଭିକ୍ଷ ପ୍ରପୀଡ଼ିତ ଓଡ଼ିଆମାନଙ୍କର ସାମାଜିକ ଓ ରାଜନୈତିକ ଦୁର୍ଦ୍ଦଶା ଗ୍ରସ୍ତାବସ୍ଥାରୁ

ହିଁ ଗୋପବନ୍ଧୁଙ୍କ ଜୀବନରେ ଦାରୁଣ ଆଘାତ ଦେଇଥିଲା । ପୁଣି ଇଂରେଜ ଶାସନର ଅତ୍ୟାଚାରର ତାଙ୍କ ମନରେ ଗଭୀର ରେଖାପାତ କରିଥିଲା ଓ ସେଥିଲାଗି ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ହୋଇ ଅହିଂସାକୁ ମୂଳ ଅସ୍ତ୍ର କରି ଦେଶର ସ୍ୱାଧୀନତା ଲାଗି ଉପଯୁକ୍ତ କର୍ମକ୍ଷେତ୍ର ପ୍ରସ୍ତୁତ କରିବା ଥିଲା ତାଙ୍କର ଐକାନ୍ତିକ କାମନା । ତେଣୁ ସେ ଜୀବନର ସହଯାତ୍ରୀ ରୂପେ ସହପାଠୀ ଆଚାର୍ଯ୍ୟ ହରିହରଙ୍କ ସମେତ ତଳ ଶ୍ରେଣୀର ଅନ୍ୟାନ୍ୟ ଛାତ୍ରମାନଙ୍କ ମଧ୍ୟରୁ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପ୍ରଚାରକ ଅନନ୍ତ ମିଶ୍ର ଓ ଅନ୍ୟାନ୍ୟମାନଙ୍କ ସାହଚର୍ଯ୍ୟକୁ ସ୍ୱୀକୃତ ତ କରିନଥିଲେ ବରଂ ସଂଗଠିତ କରିଥିଲେ । ବିଶେଷକରି ଶେଷଜୀବନ ପର୍ଯ୍ୟନ୍ତ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଓ ଆଚାର୍ଯ୍ୟ ହରିହରଙ୍କ ମଧ୍ୟରେ ଥିଲା ଏକ ଅଭୂତପୂର୍ବ ଆକର୍ଷଣ ।

ଚରିତ୍ର ଦେଶସେବା କରିବା ମାଧ୍ୟମରେ ଜନସାଧାରଣଙ୍କ ମନରେ ଜାତୀୟ ଚେତନାର ଉଦ୍ରେକ କରାଇବା ଲାଗି ତାଙ୍କର ଆନ୍ତରିକ କାମନାକୁ ଶତଗୁଣେ ଉତ୍ସାହିତ କରିଥିଲେ ପ୍ରଖର ଉଗ୍ର ଜାତୀୟତାବାଦୀ ନେତା ମୋକ୍ତାର ରାମଚନ୍ଦ୍ର ଦାସ । ପଣ୍ଡିତ ଗୋପବନ୍ଧୁ ଦାସ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିବାବେଳେ ରହୁଥିଲେ ରାମଚନ୍ଦ୍ର ଦାସଙ୍କ ଘରେ । ଦେଶର ଭବିଷ୍ୟତ ପାଇଁ ଯେଉଁ ନେତୃତ୍ୱ ଦରକାର, କିପରି ଭାବରେ ତାର ସଂଗଠନ ଛାତ୍ରାବସ୍ଥାରୁ କରାଯାଇ ପାରିବ, ଓଜସ୍ୱିନୀ ବକ୍ତୃତା ଦେଇ ଓ ନିଜର ନୈତିକ ଜୀବନର ନମୁନା ଦେଇ କିପରି ସୁପ୍ତ ଜନଶକ୍ତିକୁ ଉଗ୍ର ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରାଯାଇ ପାରିବ ପ୍ରତିଦିନ ସନ୍ଧ୍ୟାରେ ରାମଚନ୍ଦ୍ର ଦାସଙ୍କ ଘରେ ତାର ଆଲୋଚନା ହେଉଥିଲା । ଜାତୀୟତାବାଦୀ ରାମଚନ୍ଦ୍ରଙ୍କର ଗୋଟିଏ ମନ୍ତ୍ର ପ୍ରତି ମୁହୂର୍ତ୍ତରେ ଯେମିତି ଗୋପବନ୍ଧୁଙ୍କ କର୍ଣ୍ଣ ଗହ୍ୱରରେ ଗୁଞ୍ଜନ କରି ଉଠୁଥିଲା "ଶିକ୍ଷା ଓ ସ୍ୱାବଲମ୍ବନଶୀଳତାରେ ସ୍ୱାଧୀନତା ଆସେ ।" ଥରେ ରାମଚନ୍ଦ୍ର ଗୋପବନ୍ଧୁଙ୍କ ସହିତ ତାଙ୍କର କେତେଜଣ ସହପାଠୀଙ୍କୁ ଏକାଠି କରି ସମସ୍ତଙ୍କୁ ଗୋଟିଏ ପ୍ରଶ୍ନ ପଚାରିଥିଲେ ଯେ ସେମାନେ ବଡ଼ହେଲେ କ'ଣ କରିବେ । ତାର ଉତ୍ତର ଦେଇ ସେଠି ଉପସ୍ଥିତ ଥିବା ଗୋପବନ୍ଧୁଙ୍କ ସାଙ୍ଗମାନେ ଉଚ୍ଚପଦସ୍ଥ ସରକାରୀ ଚାକିରି କରିବାର ଆକାଂକ୍ଷା ପ୍ରକାଶ

କରଥିଲେ । "କିନ୍ତୁ ଅଶ୍ରୁ ସଜଳ ନେତ୍ର ଓ ବାଷ୍ପରୁଦ୍ଧ କଣ୍ଠରେ ଗୋପବନ୍ଧୁ କୌଣସି ଉତ୍ତର ଦେଇ ନ ପାରିବାରୁ ତାଙ୍କର ମନକଥା ବୁଝିପାରି ରାମଚନ୍ଦ୍ର ତାଙ୍କୁ ଗାଢ଼ ଆଲିଙ୍ଗନ କରି ଗୋପବନ୍ଧୁଙ୍କ ଅଶ୍ରୁ ସହିତ ନିଜର ଲୋତକଧାର ମିଶାଇ ଏକାକାର କରିଦେଇ କହିଥିଲେ, ଗୋପ, ଆଜ ମୋର ଜୀବନର ଆକାଂକ୍ଷା ଫଳବତୀ ହେଲା ।" (୧)

ଆଉ ଜଣେ ରାମଚନ୍ଦ୍ର ଥିଲେ ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା ଯାହାଙ୍କୁ ପଣ୍ଡିତ ଗୋପବନ୍ଧୁ ଜୀବନରେ ଦେଖିନଥିଲେ ମଧ୍ୟ ତାଙ୍କର କାର୍ଯ୍ୟକଳାପଦ୍ୱାରା ଅନେକ ପରିମାଣରେ ଅନୁପ୍ରାଣିତ ହୋଇଥିଲେ । ତାଙ୍କ ଜୀବନକୁ ପ୍ରଭାବିତ କରିବା ଦିଗରେ ଭାରତର ମହାନ୍ ପୌରାଣିକ କାବ୍ୟ ଭାଗବତର ଅବଦାନ କିଛି କମ୍ ନୁହେଁ । ଏପରିକି ଭାଗବତର ଅନେକ ଅଂଶ ସେ ମୁଖସ୍ଥ ମଧ୍ୟ କରି ପକାଇଥିଲେ । ତାଙ୍କର ସବୁଠାରୁ ପ୍ରିୟଥିଲା ଭାଗବତର ଏକାଦଶ ସ୍କନ୍ଧ । ସେହି ଭାଗବତରୁ ଅତି ସରଳଭାବେ ଜୀବନଯାପନ କରିବା, ନିଜ ମନ ଭିତରୁ ଅହଂକାର ଭାବ ଦୂର କରିବା ଏବଂ ନାରାୟଣଙ୍କୁ ନରଦେହେ ଅବତରି ଥିବା ମନେକରି ସାଧାରଣ ଜନତାର ସେବା କରିବା ଚେତନା ବୋଧହୁଏ ପାଇଥିଲେ । ଏପରିକି ଜୀବନରେ ଦେଶ ଓ ଦଶର ସେବା କରିବା ପାଇଁ ଏକାଧିକବାର ସଂକଳ୍ପ କରିଥିଲେ । ସେ ସଂକଳ୍ପ, ସେ ପ୍ରତିଜ୍ଞା ତାଙ୍କର ଭୀଷ୍ମଙ୍କ ପ୍ରତିଜ୍ଞା ପରି ସାରା ଜୀବନରେ ଅଟଳ ରହିଥିଲା । ସେମାନଙ୍କର କର୍ମପଥ-ସେବା ପଥରୁ ତିଳେହେଲେ ବିଚ୍ୟୁତ ଘଟି ନଥିଲା । ଜୀବନରେ ଅନେକ ବାଧା ଆସିଥିଲା, ବନ୍ଧନ ଆସିଥିଲା ଚୀନର ପ୍ରାଚୀର ପରି ଅନେକ ବିପଦ ବାଧାବିଘ୍ନ ସମୟରେ ସମ୍ମୁଖରେ ଉପସ୍ଥିତ ହୋଇଥିଲା । କିନ୍ତୁ ସେଥିରେ ଗୋପବନ୍ଧୁ ସାମାନ୍ୟତମ ମଧ୍ୟ ବିଚଳିତ ହୋଇ ନ ଥିଲେ । "କଃ ଈପ୍‌ସିତାର୍ଥ ସ୍ଥିର ନିଶ୍ଚୟଂ ମନଃ ପୟଶ୍ଚ ନିମ୍ନାଭିମୁଖଂ ପ୍ରତିପୟେତ୍ ।" (୨)

ଯେଉଁଦିନ ବି. ଏ. ପରୀକ୍ଷାର ଫଳ ପ୍ରକାଶ ପାଇଥିଲା ଗୋପବନ୍ଧୁ ପାଶ୍ କରିବା ଶୁଭ ସମ୍ବାଦ ପାଇବା ସଙ୍ଗେ ସଙ୍ଗେ ଆଉ ଗୋଟିଏ

(୧) ଶ୍ରୀ ଚିନ୍ତାମଣି ଦାସ—କବି ଗୋପବନ୍ଧୁ, ପୃଷ୍ଠା ୧୪

(୨) କାଳିଦାସ— କୁମାରସମ୍ଭବ, ପଞ୍ଚମ ସର୍ଗ

ସମ୍ବାଦ ମଧ୍ୟ ପାଇଥିଲେ ଯେ ତାଙ୍କର ଶିଶୁପୁତ୍ର ଆଉ ଇହଜଗତରେ ନାହିଁ । ଠିକ୍ ସେମିତି ଯେଉଁଦିନ ଉତ୍କଳରୁ ପାସ୍ କରିବା ଖବର ପାଇଥିଲେ ତହିଁ ସଙ୍ଗେ ସଙ୍ଗେ ଆଉ ଗୋଟିଏ ଦାରୁଣ ଦୁଃଖଦାୟକ ସମ୍ବାଦ ପାଇଥିଲେ ଯେ ତାଙ୍କ ସହଧର୍ମିଣୀ ତାଙ୍କୁ ଛାଡ଼ି ଚିରଦିନ ଲାଗି ଚାଲିଯାଇଛନ୍ତି ଅମରପୁରକୁ । ସାଧାରଣ ମଣିଷ ପାଖରେ ଏ ସମ୍ବାଦ ଏକାନ୍ତ ଭାବେ ଦୁଃସହ । କିନ୍ତୁ ଅସାଧାରଣ ବ୍ୟକ୍ତିତ୍ୱସଂପନ୍ନ ପୁରୁଷ ଗୋପବନ୍ଧୁ ସେସବୁକୁ ଦୃଢ଼ଚିତ୍ତର ସହିତ ଭଗବାନଙ୍କ ଆଶୀର୍ବାଦ ବୋଲି ଗ୍ରହଣ କରି ନେଇଥିଲେ । ସେ ମନେ କରିଥିଲେ ଦେଶସେବା କାର୍ଯ୍ୟରେ ପାରିବାରିକ ବ୍ୟକ୍ତିମାନେ ଯେଉଁ ବାଧାବନ୍ଧନ ହୁଏତ ସୃଷ୍ଟି କରିଥାନ୍ତେ ସେ ସବୁରୁ ସେ ନିଷ୍କୃତି ପାଇଛନ୍ତି । ସେ ବୋଧହୁଏ ପଣ୍ଡିତ ଜବାହରଲାଲଙ୍କ ଭାଷାରେ କହିବାକୁ ଚାହୁଁଥିଲେ—I prefer the open sea, with all its storms and tempests.

ଏ ଦଳିତ ମାନବର ସେବାଲାଗି, ଏ ନିଷ୍ପେଷିତ ଜାତିର ଉତ୍‌ଥାନ ଲାଗି ଗୋପବନ୍ଧୁଙ୍କ ନେତୃତ୍ୱରେ ଗଢ଼ା ଯାଇଥିଲା କଟକରେ ତରୁଣ ଉତ୍କଳ ସଙ୍ଘ । ଏହି ତରୁଣ ଉତ୍କଳ ସଙ୍ଘର ସ୍ଥାୟୀ ସଭାପତି ଥିଲେ ରେଭେନ୍‌ସା କଲେଜର ଅଧ୍ୟକ୍ଷ ଓ ସ୍ଥାୟୀ ସମ୍ପାଦକ ଥିଲେ ଗୋପବନ୍ଧୁ ଦାସ । ତାର ବିଭିନ୍ନ ବିଭାଗ, ଯଥା—ସାହିତ୍ୟ, ଶାରୀରିକ ଶିକ୍ଷା ପ୍ରଭୃତି ବିଭାଗଗୁଡ଼ିକର ପରିଚାଳନା କରୁଥିଲେ ନୀଳକଣ୍ଠ, ହରିହର, ଗୋଦାବରୀଶ, କୃପାସିନ୍ଧୁ ଓ ଅନ୍ୟମାନେ । ତେବେ କେତେଜଣ ନିର୍ଦ୍ଦିଷ୍ଟ ଛାତ୍ରଙ୍କୁ ନେଇ କେତୋଟି ଗୋପନ ବୈଠକ ବସୁଥିଲା ଓ ତା'ର ପରିଚାଳନା କରୁଥିଲେ ସ୍ୱୟଂ ଗୋପବନ୍ଧୁ ଓ ବ୍ରଜସୁନ୍ଦର ଦାସ । ସେ ବୈଠକଗୁଡ଼ିକରେ ଆଲୋଚନା ହେଉଥିଲା ଫରାସୀ ରାଷ୍ଟ୍ରବିପ୍ଳବର କାହାଣୀ, ଇଟାଲୀର ସ୍ୱାଧୀନତା ଆନ୍ଦୋଳନର ଇତିହାସ ଇତ୍ୟାଦି । "ତାର ବୈଠକ ଦିବସରେ ବସେ ନାହିଁ, ବସେ ରାତିରେ; ଛାତ୍ରାବାସର ଛାତ୍ରମାନେ ଖାଇସାରି ଶୋଇ ଘୁଙ୍ଗୁଡ଼ି ମାରିବା ପରେ । କେବେ ନିର୍ଜନ ଜଳ ପଡ଼ିଆରେ, କେବେ ମହାନଦୀ କୂଳେ, କେବେ ବା କାଠଯୋଡ଼ୀ ବାଲି ଉପରେ । ସେସବୁ ବୈଠକର ଅଗ୍ରଣୀ ନୀଳକଣ୍ଠ ବାବୁ । ଆମ କଥାବାର୍ତ୍ତାବେଳେ ଜଣେ କେହି ଆସି ଶୁଣିବାକୁ ଚେଷ୍ଟା କରୁଛନ୍ତି ଆମେ ଭାବିବାକୁ ଲାଗିଲୁ । ଅନ୍ଧାର

ରାତିରେ କେବେ କେବଳ ଗୋଟିଏ କ୍ଷୀଣ ପାଦ ଶବ୍ଦ ଶୁଭେ । ଜହ୍ନଆଲୁଅ ଥିଲେ ମୂର୍ତ୍ତିଟାଏ ମଧ୍ୟ ଦିଶିଯାଏ । ମୁଁ ଏକାଥିଲେ ତାକୁ ଭୂତ ବୋଲି ଭୟରେ ଥରନ୍ତି । ଥରେ ସେକଥା ଆମେ ଗୋପବନ୍ଧୁ ବାବୁଙ୍କୁ କହିଲୁ । ସେ ଶୁଣି ଉତ୍ତର ଦେଲେ, "ହଁ ହୋ, ସେ ବି ଏକ ଭୂତ । ବାଳକୃଷ୍ଣଟା ହୋଇଥିବ ତ ।" ଗୋଇନ୍ଦା ପୁଲିସ ବିଭାଗର ଇନ୍‌ସପେକ୍ଟର ବାଳକୃଷ୍ଣ ମହାନ୍ତି ଅତୀତରେ ଥିଲେ ତାଙ୍କର ଜଣେ ସହପାଠୀ ।" (୩)

ବଙ୍ଗଳାର ତତ୍କାଳୀନ ଉଗ୍ରଜାତୀୟ ଭାବାପନ୍ନ ସନ୍ତ୍ରାସବାଦୀ ଦଳଙ୍କ ସହିତ ଏ ଗୁପ୍ତ ବୈଠକ ସଂଯୋଗ ମଧ୍ୟ ଥିଲା । ସେହି ଦଳର ସଭ୍ୟମାନେ ଏ ଦେଶର ଶାସନକଳକୁ ଅକାମୀ କରିବା ପାଇଁ ଓ ଭାରତରୁ ବିଦେଶୀ ସରକାରଙ୍କ ଅସ୍ତିତ୍ୱ ଲୋପ କରିବା ପାଇଁ ଗୁପ୍ତରେ ଗୋରା ହାକିମଙ୍କ ବିରୁଦ୍ଧରେ ଅନେକ ଆତଙ୍କମୂଳ୍ତ କାର୍ଯ୍ୟରେ ନିଜକୁ ନିୟୋଜିତ କରାଇଥିଲେ । ଉକ୍ତ ସଙ୍ଘ ଗଠନ କରିବା ମୂଳରେ ଥିଲା ସ୍ୱାଧୀନଚେତା ବିଶ୍ୱନାଥ କରଙ୍କ ପ୍ରେରଣା ଓ ଉତ୍ସାହ । ସେହି କାରଣରୁ ଇଂରେଜ ସରକାର ମନେ କରିଥିଲେ ବିଶ୍ୱନାଥ କର ଏବଂ ଗୋପବନ୍ଧୁ ଦାସଙ୍କ ପ୍ରଭାବରେ ପ୍ରଭାବିତ ହୋଇ ଛାତ୍ରମାନେ ବିପଥଗାମୀ ହେଉଥିଲେ । ସେମାନଙ୍କ ପ୍ରତ୍ୟେକ କାର୍ଯ୍ୟକଳାପର ବିବରଣୀ ରଖିବା ପାଇଁ ଗୋପବନ୍ଧୁଙ୍କ ଜଣେ ସହପାଠୀ ତଥା ବନ୍ଧୁ ସି. ଆଇ. ଡ଼ି. ଇନ୍‌ସପେକ୍ଟର ଶ୍ରୀ ବାଳକୃଷ୍ଣ ମହାନ୍ତି ନିଯୁକ୍ତ ହୋଇଥିଲେ ।

ଏ ଜାତିକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ଲାଗି ଆତ୍ମୋତ୍ସର୍ଗ କରିପାରିବା ଭଳି କେତେ ଜଣଙ୍କୁ ପଣ୍ଡିତ ଗୋପବନ୍ଧୁ ବରାବର ପ୍ରଥମରୁ ହିଁ ସ୍ଥିର କରି ନେଇଥିଲେ । ସେଥିପାଇଁ କର୍ମୀ ସଂଗ୍ରହ ଥିଲା ତାଙ୍କର ପ୍ରଧାନ କାମ । ସେମାନଙ୍କ ମନଭିତରେ ଆତ୍ମବିଶ୍ୱାସ ଜନ୍ମାଇବା ଲାଗି ପ୍ରାୟ ପଚିଶ ଜଣ ଯୁବକଙ୍କୁ ସଙ୍ଗରେ ନେଇ କଟକରୁ ଧବଳେଶ୍ୱର ଯାଇଥିଲେ । ଜାତିର ଉନ୍ନତି କରିବା ଲାଗି ଜୀବନ ଉତ୍ସର୍ଗ କରିବା

---

(୩) ପଣ୍ଡିତ ଗୋଦାବରୀଶ ମିଶ୍ର—ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ (ଦ୍ୱିତୀୟ ସଂସ୍କରଣ)—ପୃ ୧୧୬

ନିମନ୍ତେ ପ୍ରତିଜ୍ଞାବଦ୍ଧ ହେବେ ବୋଲି ଉଦ୍ଦେଶ୍ୟ ଥିଲା ସେମାନଙ୍କର । ଜାତିର ବନ୍ଧୁ ଗୋପବନ୍ଧୁଙ୍କ ପୌରୋହିତ୍ୟରେ ପ୍ରତ୍ୟେକେ ଦେବ ବିଗ୍ରହକୁ ଛୁଇଁ ଗୋଟିଏ ଗୋଟିଏ ଭଲ ଗୁଣର ଅଧିକାରୀ ହେବା ପାଇଁ ଓ ସାରାଜୀବନରେ ତାର ବ୍ୟତିକ୍ରମ ନ ଘଟାଇବା ପାଇଁ ପ୍ରତିଜ୍ଞା କରିଥିଲେ । ପଣ୍ଡିତ ଗୋଦାବରୀଶଙ୍କ ସେ ସଙ୍କଳ୍ପ କରିବା ବେଳର ବର୍ଣ୍ଣନା ଅତ୍ୟନ୍ତ ମର୍ମସ୍ପର୍ଶୀ, ଅତ୍ୟନ୍ତ ରୋମାଞ୍ଚକର ।

ଜାତିର ପରାଧୀନତା ଶୃଙ୍ଖଳକୁ ବିଶୃଙ୍ଖଳ କରିବା ପାଇଁ, ଜାତୀୟ ଜୀବନରେ ଆଲୋଡ଼ନ ସୃଷ୍ଟି କରିବା ପାଇଁ ପଣ୍ଡିତ ଗୋପବନ୍ଧୁ ଚାହିଁଥିଲେ ଆଗାମୀ କାଳର ଯୁବ ସମାଜ ତଥା ଆଜିର ଛାତ୍ର ଦେଶପ୍ରେମରେ ଉଦବେଳିତ ହେଉ, ଜାତି ପ୍ରତି ମାୟା ମମତା ନେଇ ବଡ଼ ହେଉ । ସେ ଜାତୀୟ ଚେତନାକୁ ଦ୍ରୁତ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରିବା ପାଇଁ ଆବଶ୍ୟକ ଉନ୍ନତ ଜାତୀୟ ଜୀବନ ଗଠନ କରିବା ଉଦ୍ଦେଶ୍ୟରେ କର୍ମବୀର ଗୋପବନ୍ଧୁ ପ୍ରତିଷ୍ଠା କରିଥିଲେ ସତ୍ୟବାଦୀଠାରେ ଗୋଟିଏ ବନବିଦ୍ୟାଳୟ । ସେ ମନେ କରିଥିଲେ ଆମେରିକା ପରି ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରର ପ୍ରୟୋଗ ଭାରତ ପକ୍ଷେ ସମ୍ଭବ ନୁହେଁ । ତେଣୁ ପଶୁବଳ ଉପରେ ନିର୍ଭର କରୁଥିବା ବ୍ରିଟିଶ ଶାସନ ବିରୁଦ୍ଧରେ ଯୁଦ୍ଧ ପାଇଁ ଦରକାର ଏକ ଉତ୍ତମ ଲୋକ-ସମାଜ । କୁମ୍ଭାର ମାଟି ପିଣ୍ଡୁଳା ଧରି ଦେବବିଗ୍ରହ ତିଆରି କଲା ଭଳି ଉତ୍ତମ ଶିକ୍ଷକମାନେ ହିଁ ନିଜର ସମସ୍ତ ବ୍ୟକ୍ତିଗତ ସ୍ୱାର୍ଥକୁ ବଳିଦେଇ ଦେଶୋଦ୍ଧାରକୁ ନିଜର ବ୍ରତ କରି ପ୍ରକୃତ ମଣିଷ ଗଠନ କରିବାକୁ ହେବ । ସେଥିପାଇଁ ସେ କଳ୍ପନା କରିଥିଲେ ସତ୍ୟବାଦୀ ବିଦ୍ୟାଳୟ । ତାଙ୍କ ମତରେ ତାହାଥିଲା ଏକ "ମଣିଷ ଗଢ଼ା କାରଖାନା ।" ମଣିଷ ଭଳି ମଣିଷମାନଙ୍କୁ ସେଠାରେ ତିଆରି କରାଯାଉଥିଲା । ପ୍ରକୃତରେ ସତ୍ୟବାଦୀ ବନ-ବିଦ୍ୟାଳୟ ଥିଲା ତାଙ୍କ ଚିନ୍ତାଧାରାର ପ୍ରାଣକେନ୍ଦ୍ର—ସାଧନାର ପ୍ରଧାନ ପୀଠସ୍ଥଳ । ତେଣୁ ତା'ର ପ୍ରାରମ୍ଭିକ ଅବସ୍ଥାରେ ହିଁ ସେଠିକାର ଶିକ୍ଷକ ତଥା ଛାତ୍ରଙ୍କ ସଂସ୍କାରବାଦୀ କାର୍ଯ୍ୟକ୍ରମରେ ଶାସନୀ ବ୍ରାହ୍ମଣମାନେ ଅତିଷ୍ଠିତ ହୋଇ ସେ ସ୍କୁଲର ଘରଦ୍ୱାରରେ ଅଗ୍ନି ସଂଯୋଗ କରିଥିଲେ ତାକୁ ସମୂଳେ ଭସ୍ମ କରିଦେବା ପାଇଁ । କର୍ମଯୋଗୀ ଗୋପବନ୍ଧୁ ସେଥିରେ

ବିଚଳିତ ନହୋଇ ବରଂ ଉତ୍ସାହିତ ହୋଇ କହିଥିଲେ, "ସତ୍ୟବାଦୀ ସ୍କୁଲପାଇଁ କୋଟାଢର ହେବା ବୋଧହୁଏ ଭଗବାନଙ୍କ ଇଚ୍ଛା ।"

ସେ ଦୁର୍ଘଟଣାର କିଛିଦିନ ପରେ ଯଥାର୍ଥରେ କୁଳବୃଦ୍ଧ ମଧୁସୂଦନ ବିଦ୍ୟାଳୟର ବାର୍ଷିକ ଅଧିବେଶନ ଅବସରରେ କହିଥିଲେ, "ଏ ବିଦ୍ୟାଳୟ ଧନରେ ଗଢ଼ା ହୋଇନାହିଁ; ରକ୍ତମାଂସ ମସ୍ତିଷ୍କରେ ଗଢ଼ା ହୋଇଛି × × × ଘର ପୋଡିଗଲା, ଇଟାର କାନ୍ଥ ଭାଙ୍ଗିଗଲା— ବିଦ୍ୟାଳୟର ଗୃହ ରକ୍ତମାଂସ ଦ୍ୱାରା ଗଢ଼ା ହୋଇଛି । ସରକାର ସନ୍ଦେହ ଦୃଷ୍ଟିରେ ଆମର ଏ ଉଦ୍ୟମକୁ ଦେଖୁଛନ୍ତି । ସି. ଆଇ. ଡି. ଜଗିଛନ୍ତି । ମାତ୍ର ସରକାର ଜାଣିବେ ଏଠାରେ ତୋପକମାଣ ଯୁଦ୍ଧପାଇଁ ଯୋଦ୍ଧା ତିଆରି ହୋଇନାହାନ୍ତି, ନୀରବ ଯୋଦ୍ଧା ଗଢ଼ା ହୋଇଛନ୍ତି ।"

ଭାରତୀୟ ଜାତୀୟ କଂଗ୍ରେସର ବାର୍ତ୍ତା ସହିତ ଓଡ଼ିଶାର ଜନଗଣଙ୍କୁ ପ୍ରଥମେ ପରିଚିତ କରାଇ ଦେଇଥିଲେ ପଣ୍ଡିତ ଗୋପବନ୍ଧୁ । ସେ ହୃଦୟଙ୍ଗମ କରିଥିଲେ "ଦେଶାତ୍ମବୋଧ ବିଶ୍ୱପ୍ରୀତିର ବିରୋଧୀ ନୁହେଁ ବରଂ ବିଶ୍ୱପ୍ରୀତିବିହୀନ ପ୍ରାଣରେ ଜାତୀୟତା ଏବଂ ସ୍ୱଦେଶବାତ୍ସଲ୍ୟ ଅସମ୍ଭବ ।" (୪) ଆରମ୍ଭରୁ ଉତ୍କଳ ସମ୍ମିଳନୀ ସହିତ ଘନିଷ୍ଠଭାବେ ସଂପୃକ୍ତ ଗୋପବନ୍ଧୁ ୧୯୧୯ ମସିହାରେ ସଭାପତିତ୍ୱ ଅଭିଭାଷଣରେ ଘୋଷଣା କରିଥିଲେ, "ଆମ୍ଭେମାନେ ପ୍ରଥମେ ମନୁଷ୍ୟ ପରେ ଭାରତୀୟ ଏବଂ ସର୍ବଶେଷରେ ଓଡ଼ିଆ ଏହି ଭାବ ନ ରଖିଲେ ଜାତୀୟ ସମନ୍ୱିକାଶ ଅସମ୍ଭବ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି ମାତ୍ର ସାମାଜିକ କର୍ତ୍ତବ୍ୟ ବିନା ସେ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏନାହିଁ । ସେହିପରି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଫୁଟିବ ପ୍ରଶସ୍ତରେ, ଭାରତୀୟ ଜାତୀୟତା କ୍ଷେତ୍ରରେ ଏବଂ ଉଦାର ସାର୍ବଜନୀନ ମାନବିକତାରେ ।" ସେହି ଚିନ୍ତାଧାରାର ପରିପ୍ରକାଶ ମଧ୍ୟ ତାଙ୍କ କଲମ ମୁନରେ ହୋଇଥିଲା—

"ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀଙ୍କ ହେଉ ଏହା ନୀତି ।"

---

(୪) ଗୋପବନ୍ଧୁ—"ସତ୍ୟବାଦୀ"ର ପ୍ରଥମ ସମ୍ପାଦକୀୟ ।

ଉତ୍କଳମଣିଙ୍କ ମତରେ ଉତ୍କଳ ଜନମାଙ୍କର ସେବା କେବଳ ଉତ୍କଳୀୟ ଜନତାର ସେବା ନୁହଁ ଇ ଭାରତର ସେବା, ସର୍ବ ବିଶ୍ୱର ସେବା ଏବଂ ସମଗ୍ର ବିଶ୍ୱବାସୀଙ୍କ ସେବା । ଜଗନ୍ନାଥଙ୍କ ଧର୍ମରେ ଦୀକ୍ଷିତ ହୋଇ କବି ଗୋପବନ୍ଧୁ ଗାଇ ଉଠିଥିଲେ—

"ନିଜ ସ୍ୱାର୍ଥ ଲାଗି ଯେ ତ ନୁହେ ହିନ୍ଦୁ,
ବିଶ୍ୱହିତେ ହିନ୍ଦୁ ପ୍ରୀତି ଲକ୍ଷବନ୍ଧୁ ।"

"ଆପଣା ଘରେ [ଦୃଢ଼ଥିବାରେ] ବିଶ୍ୱାସୀ ସେମାନେ, ଜାତିର ନିଜସ୍ୱ ରକ୍ଷାରେ ଅଗ୍ରଣୀ, ତ୍ୟାଗୀ, ତପସ୍ୱୀ ଓ ତେଜସ୍ୱୀ, ପୌରୁଷସମ୍ପନ୍ନ ନେତା ଯଥାର୍ଥ ଜାତୀୟ ବୀର । ସେମାନଙ୍କ ପ୍ରଦେଶ ପ୍ରୀତି କେବେ ଦେଶପ୍ରୀତି ବା ବିଶ୍ୱପ୍ରୀତିର ଅନ୍ତରାୟ ହୋଇଥିଲା ।" (୫)

ଗୋପବନ୍ଧୁ ଯାହା ଚିନ୍ତା କରୁଥିଲେ ତାହା କହୁଥିଲେ, ଯାହା କହୁଥିଲେ ତାହା ଲେଖୁଥିଲେ ଏବଂ କାର୍ଯ୍ୟରେ ମଧ୍ୟ ପରିଣତ କରିବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । କଥା ଓ କାର୍ଯ୍ୟ ଭିତରେ ତାଙ୍କର କୌଣସି ତଫାତ୍ ନ ଥିଲା । ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଉନ୍ନତ ଜାତୀୟ ଜୀବନ ଓ ଜାତୀୟ ଚରିତ୍ର ଗଠନ । ସେଥିପାଇଁ ଜନ ସମାଜକୁ ଉଦ୍‌ବୁଦ୍ଧ କରାଇବା ଓ କର୍ମତତ୍ପର କରାଇବା ଥିଲା ତାଙ୍କ ରଚନାବଳୀର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ । ତେଣୁ ତାଙ୍କର ସାହିତ୍ୟ କୃତିରେ "କେବଳ ପ୍ରାପ୍ତି ନାହିଁ ନୂତନତ୍ୱର ଦିଗ୍‌ଦର୍ଶନ ଅଛି, ସର୍ବୋଦୟର ବ୍ୟାପ୍ତି ଅଛି, ସନ୍ନ୍ୟାସୀର ବୈରାଗ୍ୟ ସାଧନା ଅଛି, ଅହିଂସାଧର୍ମୀ ବୀରପୁରୁଷର ହୁଙ୍କାର ଅଛି, କର୍ମଯୋଗରେ ଉଦ୍‌ବୁଦ୍ଧ ସ୍ପନ୍ଦନ ଓ ଜାଗରଣ ଅଛି । ସାମ୍ବାଦିକତା ସହିତ ଚିରନ୍ତନ ସାହିତ୍ୟର ସମ୍ମେଳନ ଅଛି, ଆଶା ଓ ନୈରାଶ୍ୟର ଆଲୋକ ଛାୟା ଅଛି, ଜାତିର ସର୍ବୋତୋମୁଖୀ ଶ୍ରେୟବୋଧର କଲ୍ୟାଣ ଶ୍ରୀମଣ୍ଡିତ ଅଭିପ୍ରକାଶ ଅଛି ଏବଂ ଅଛି ଏକ ସୂତ୍ରରେ ଗ୍ରଥିତ ମଣିଗଣ ପରି

(୫) ଡ଼କ୍ଟର କୁଞ୍ଜବିହାରୀ ଦାସ – 'ସତ୍ୟବାଦୀଯୁଗ' ପୁସ୍ତକର ମୁଖବନ୍ଧ ।

ମହାକାଳର ପ୍ରବହମାନ ଗତିଶୀଳତା—ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗ ସାଧନା ।" (୬)

ଅନେକ ସ୍ମରଣୀୟ ଘଟଣାବଳୀରେ ପରିପୂର୍ଣ୍ଣ ଏହି ଜୀବନର ଆବିର୍ଭାବ ହୋଇଥିଲା ୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖରେ । ଜନ୍ମସ୍ଥାନ ଥିଲା ପୁରୀଜିଲ୍ଲାର ସାକ୍ଷୀଗୋପାଳ ନିକଟବର୍ତ୍ତୀ ସୁଆଣ୍ଡୋ ଗ୍ରାମ—ଭାର୍ଗବୀ ନଦୀର ଉପକୂଳରେ ।

ମାତା ସ୍ୱର୍ଣ୍ଣମୟୀ ଦେବୀ ଅର୍ଦ୍ଧ ତିନଦିନ ଧରି ଅସହ୍ୟ ଗର୍ଭବେଦନା ଅନୁଭବ କରିବା ପରେ ହଠାତ୍ ଦିନେ ରାତିରେ ଏକ ଅଶରୀରୀର ସ୍ୱପ୍ନବାଣୀ ଶୁଣିଥିଲେ ଯେ ନିକଟରେ ଜନ୍ମଲାଭ କରିବାକୁ ଥିବା ଶିଶୁ ସନ୍ତାନ ପାଇଁ ତାଙ୍କ ନିଜର—ଆପଣାର ହୋଇ ରହିପାରିବ ନାହିଁ । ସେ ହେବ ଅନ୍ୟମାନଙ୍କର ଏକାନ୍ତ ଆପଣାର । ତେଣୁ ନିଜଘର ଛାଡ଼ି ଅନ୍ୟତ୍ର ଚାଲିଗଲେ ସେ ଭୋଗୁଥିବା ଗର୍ଭବେଦନା ଲାଘବ ହୋଇଯିବ ନିଶ୍ଚୟ ।

ଅଶରୀରୀର ବାଣୀ ସତ୍ୟ ପ୍ରମାଣିତ ହୋଇଥିଲା ।

ସ୍ୱର୍ଣ୍ଣମୟୀ ଦେବୀ କପରି ସେତେବେଳେ ଜାଣିପାରିଥାନ୍ତେ ଯେ ତାଙ୍କର ଗର୍ଭସ୍ଥ ସନ୍ତାନ ହେବ ଉତ୍କଳ ଜନନୀର ଜଣେ ଯୋଗ୍ୟ ସନ୍ତାନ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜନନୀ ଜନ୍ମଭୂମିର ସେବାରେହିଁ ନିଜକୁ ସେ ନିୟୋଜିତ କରିବ । ଅନନ୍ୟୋପାୟ ହୋଇ ଗର୍ଭବେଦନା ଲାଘବ କରିବା ପାଇଁ ସେହି ଅଶରୀରୀର ସୂଚନା ଅନୁଯାୟୀ ଦେବୀ ନିଜଘର ଛାଡ଼ି ପଡ଼ୋଶୀଙ୍କ ଘରକୁ ଚାଲିଯିବା ପାଇଁ ସ୍ଥିର କରିଥିଲେ ।

ସତକୁ ସତ ଯେତେବେଳେ ସନ୍ତାନବତ୍ସଳା ଜନନୀ ଯାଇ ପଡ଼ୋଶୀ ଚକ୍ରଧର ଦାସଙ୍କ ଗୃହରେ ଉପସ୍ଥିତ ହୋଇଥିଲେ, ଗୋପବନ୍ଧୁ ଭୂମିଷ୍ଠ ହୋଇଥିଲେ ।

(୬) ଅଧ୍ୟାପକ ଚିନ୍ତାମଣି ଦାଶ—କବି ଗୋପବନ୍ଧୁ, ପୃ-୧୮-୧୯

ଗୋପବନ୍ଧୁଙ୍କ ବାଲ୍ୟଜୀବନ ଥିଲା ବାସ୍ତବିକ୍ ନୈରାଶ୍ୟରେ ପରିପୂର୍ଣ୍ଣ । ମାତୃସ୍ନେହ ତାହାଙ୍କ ଲାଗିଥିଲା ଏବଂ କଳ୍ପନାର ବସ୍ତୁମାତ୍ର । କେବଳ ବାଲ୍ୟବୟସରେ ଯେ ସେ ଦୁଃଖ ଓ ନୈରାଶ୍ୟରେ କଟାଇଥିଲେ ତା' ନୁହେଁ, ସାରାଜୀବନରେ ପାରିବାରିକ ମୋହ ମମତା ତଥା ଆକର୍ଷଣର ମୂଲ୍ୟ ସେଇ ମହାନ୍ ବ୍ୟକ୍ତିତ୍ୱ ଉପରେ ବିଶେଷ ପ୍ରଭାବ ପକାଇ ପାରିନଥିଲା କହିଲେ ଚଳେ ଏବଂ ସେଥିପାଇଁ ବାସ୍ତବରେ ସେ ଥିଲେ ଉତ୍କଳର ମଣି ।

ସେଇ ମଣିର ଆଲୋକ ନିର୍ବାପିତ ହୋଇଥିଲା ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖ ରବିବାର ସନ୍ଧ୍ୟା ସାତଟା ପଚିଶି ମିନିଟରେ ।

ଅବସ୍ଥା ଉଦ୍‌ବେଗ ହେବାରୁ ତାର ବାର୍ତ୍ତା ପାଇ ସତ୍ୟବାଦୀଠାରେ ଉପସ୍ଥିତ ହୋଇଥିଲେ ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଶ୍ରୀ ରତ୍ନାକର ପତି, ଶ୍ରୀ ରାଧାନାଥ ରଥ ଓ ଅନ୍ୟମାନେ । ସେ ନିଜର ଶେଷ ଅଭିଳାଷ ନିଜେ ଡାକି ଦେଇଥିଲେ ଓ ତାହା ଲେଖିଥିଲେ ଶ୍ରୀ ରାଧାନାଥ ରଥ । ଶେଷରେ ସେଥିରେ ଦସ୍ତଖତ କରିବାର ଆଉ ମାତ୍ର ଦୁଇଘଣ୍ଟା ସେ ବଂଚି ରହିଥିଲେ ।

ପୁରୀର ସିଭିଲ୍ ସର୍ଜନ୍ ଗୋପବନ୍ଧୁଙ୍କ ସ୍ୱାସ୍ଥ୍ୟର ଚିକିତ୍ସା କରୁଥିଲେ । କିନ୍ତୁ ସେ ସେତେବେଳେ ଚାହୁଁଥିଲେ ସର୍ବମୟ କର୍ତ୍ତା ଭଗବାନଙ୍କ ଚିକିତ୍ସା ।



॥ ଦୁଇ ॥

# ଝଡ଼ ଝଞ୍ଜା ବିକ୍ଷୁବ୍ଧ ଫେନୀଳ ସାଗର

ବାଲ୍ୟବୟସରୁ ହିଁ ଗୋପବନ୍ଧୁ ଜନ୍ମିତ ମାତାଙ୍କର ସ୍ନେହ ସାନ୍ନିଧ୍ୟ ପାଇବାର ସୁଯୋଗରୁ ବଞ୍ଚିତ ହୋଇଥିଲେ । ସବୁଦିନ ଲାଗି ପର କରିଦେଇ ତାଙ୍କ ମାତା ସ୍ୱର୍ଣ୍ଣମୟୀ ଦେବୀ ମୃତ୍ୟୁବରଣ କରିଥିଲେ ।

ଗୋପବନ୍ଧୁଙ୍କ ପିତା ଦୈତାରି ଦାସ ସ୍ୱର୍ଣ୍ଣମୟୀ ଦେବୀଙ୍କୁ ତୃତୀୟ ପତ୍ନୀ ରୂପେ ଗୃହକୁ ଆଣିବାର ପ୍ରଧାନ କାରଣ ଥିଲା ନିଜବଂଶର ଉତ୍ତରାଧିକାରୀ ସୃଷ୍ଟି କରିବା । ସ୍ୱର୍ଣ୍ଣମୟୀ ଦେବୀଙ୍କ ମୃତ୍ୟୁପରେ ସେ ପୁନର୍ବାର ବିବାହ କରିବା ପାଇଁ ବିଭିନ୍ନ ଦିଗରୁ ପ୍ରରୋଚିତ ହୋଇଥିଲେ ମଧ୍ୟ ସେଥିପାଇଁ ମନ ବଳାଇ ନଥିଲେ । କାରଣ ସେତେବେଳକୁ ବଂଶର ଉତ୍ତରାଧିକାରୀ ଜନ୍ମ ନେଇ ସାରିଥିଲେ । କିନ୍ତୁ ତଥାପି ନବଜାତକର ଯେ ରକ୍ଷଣାବେକ୍ଷଣ ଆବଶ୍ୟକ । ସଦ୍ୟଜାତ ଶିଶୁର ଭବିଷ୍ୟତକୁ ଅନ୍ଧକାର ଭିତରେ ବୁଡ଼ାଇ ନରଖି ଉଜ୍ଜ୍ୱଳ ଆଲୋକର ସନ୍ଧାନ ଦେବା ଦୃଷ୍ଟିରୁ ପୁନର୍ବାର ବିବାହ କରିବା ପାଇଁ ସ୍ଥିର କରିଥିଲେ ଦୈତାରୀ ଦାସ ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ଓଡ଼ିଶାରେ ପ୍ରଚଳିତ ପରମ୍ପରା ଥିଲା ବାଲ୍ୟବିବାହ । ଗୋପବନ୍ଧୁଙ୍କ ପିତା ପୁନଶ୍ଚ ବିବାହ କରିବାକୁ ନିଷ୍ପତ୍ତି କରିଥିଲେ ମଧ୍ୟ ଏବଂ ଯଥାଶୀଘ୍ର ଦୈତାରୀ ଦାସଙ୍କ ଘରେ ଜଣେ ନାରୀର ଆବଶ୍ୟକତା ଥିଲେ ମଧ୍ୟ ତତ୍‌କାଳୀନ ସାମାଜିକ ରୀତିନୀତି ତଥା ପ୍ରଚଳିତ ପରମ୍ପରା ସେ ସୁଯୋଗ ତାଙ୍କୁ ଦେଇନଥିଲା । ବାଧ୍ୟତାମୂଳକ ଭାବେ ବାଲ୍ୟବିବାହ କରିବାକୁ ପଡ଼ିଥିଲା ତାଙ୍କୁ — ସ୍ୱାର୍ଥଥିଲା ବାଞ୍ଛିତ ଗୋପବନ୍ଧୁଙ୍କ ଲାଳନପାଳନ । ଏକ କୁମାରୀ କନ୍ୟାକୁ ବିବାହ କରି ସେ ଗୃହଯୋଗ୍ୟା ହେବା ପର୍ଯ୍ୟନ୍ତ ଅପେକ୍ଷା କରି ତାକୁ କୁଳବଧୂ ରୂପେ ଘରକୁ ଆଣିବା ଏକ ସମୟସାପେକ୍ଷ କାର୍ଯ୍ୟ । ତେଣୁ

ଇତିମଧ୍ୟରେ ବାଳୁତ ଗୋପବନ୍ଧୁଙ୍କ ଲାଳନପାଳନ ପାଇଁ ଦୈତାରୀ ଦାସ ସ୍ଥିର କରିଥିଲେ ତାଙ୍କର ଜଣେ ବିଧବା ଭଗ୍ନୀ କମଳାଦେବୀଙ୍କୁ । କମଳାଦେବୀ ଆନ୍ତରିକତାର ସହିତ ଗୋପବନ୍ଧୁଙ୍କ ଯତ୍ନ ନେଇଥିଲେ । ତେଣୁ ମା ସ୍ୱରୂପ ଜନ୍ମିତ ମାତାଙ୍କ ସ୍ନେହ ସହାନୁଭୂତି ପାଇନଥିଲେ ମଧ୍ୟ ତାହା ସେପରି ସେ ଅନୁଭବ କରି ପାରିନଥିଲେ । ଆବାଲ୍ୟ ବିଧବା-ଥିବା କମଳାଦେବୀ ଗୋପବନ୍ଧୁଙ୍କୁ ନିଜ ସନ୍ତାନଠାରୁ ବଳି ଅଧିକ ସ୍ନେହ କରୁଥିଲେ ।

ବୟସର ବୃଦ୍ଧି ସହିତ କିଶୋର ଗୋପବନ୍ଧୁଙ୍କ ଶିକ୍ଷାଲାଭ କରିବା ଆରମ୍ଭ ହୋଇଥିଲା ବଡ଼ଭାଇ ନାରାୟଣଙ୍କ ସହିତ । ପିତା ଦୈତାରୀ ଦାସ ଉଭୟ ପୁତ୍ରଙ୍କ ଲାଗି ଗୃହ ଶିକ୍ଷକ ନିଯୁକ୍ତ କରିଥିଲେ । ସେଇ ପ୍ରାଚୀନ ରୀତିରେ ବିଦ୍ୟାଶିକ୍ଷା ଆରମ୍ଭ ହୋଇଥିଲା । ତେବେ ସବୁଠାରୁ ଆଶ୍ଚର୍ଯ୍ୟର କଥା ଥିଲା ଯେ ଖୁବ୍ କମ୍ ବୟସରେ ତଥା ଖୁବ୍ କମ୍ ସମୟ ମଧ୍ୟରେ ଗୋପବନ୍ଧୁ ଭାଗବତ ପାଠ କରିବାରେ ପାରଦର୍ଶିତା ଦେଖାଇଥିଲେ । ସେଇ ସମୟରୁ ହିଁ କବିତା ଲେଖିବା ତାଙ୍କର ଆରମ୍ଭ ହୋଇଥିଲା ଏବଂ ସେଇଥିପାଇଁ ତାଙ୍କର ଗୃହ ଶିକ୍ଷକ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟାନ୍ୱିତ ମଧ୍ୟ ହୋଇପଡିଥିଲେ । ସେତେବେଳେ ପିତା ଦୈତାରୀ ଦାସ ମଧ୍ୟ ପୁତ୍ରର କବିତା ଲେଖା ଉଦ୍ୟମକୁ ଅଧିକ ଉତ୍ସାହିତ କରିଥିଲେ । ତାହା କିଶୋର ଗୋପବନ୍ଧୁଙ୍କ ଗତିପଥକୁ ସରଳ ଏବଂ ସ୍ୱଚ୍ଛଳ କରିଦେଇଥିଲା ।

ଉତ୍କଳୀୟ ପାରମ୍ପରିକ ରୀତିରେ ପଢ଼ା ହେଉଥିବା ଚଟଶାଳୀରେ ନାମ ଲେଖାଇ ଥିଲେ ଗୋପବନ୍ଧୁ । କିନ୍ତୁ ସେଇ ଚଟଶାଳୀରେ ନିର୍ଦ୍ଧାରିତ ପାଠ୍ୟକ୍ରମ ଶେଷ କରିବା ପୂର୍ବରୁ ତାଙ୍କ ଜୀବନରେ ଏକ ବିଶେଷ ଘଟଣା ଘଟିଯାଇଥିଲା । ତାହା ଥିଲା ତାଙ୍କ ବିବାହ ।

ମାତ୍ର ବାରବର୍ଷ ବୟସରେ ଗୋପବନ୍ଧୁ ବିବାହ କରିଥିଲେ । "ବୁଢ଼ାବର" ବୋଲି ବ୍ରାହ୍ମଣ ସମାଜରେ ଅପକୀର୍ତ୍ତି ଅର୍ଜନ କରିବାକୁ ନ ଦେଇ ତାଙ୍କ ପିତା ଦୈତାରୀ ଦାସ ପୁତ୍ରର ବିବାହ କାର୍ଯ୍ୟ ସମ୍ପାଦନ

କରିଥିଲେ । କନ୍ୟାର ନାମ ଥିଲା ମୋତି ଓ ତାଙ୍କ ଗ୍ରାମ ଥିଲା ସୁଆଣ୍ଡୋର ଏକ ପଡ଼ୋଶୀ ଗ୍ରାମ । ବିବାହ କରିବା ବେଳକୁ ତାର ବୟସ ମାତ୍ର ନଅ—ଏକ ଚପଳା କିଶୋରୀ । ଉଭୟଙ୍କ ମଧ୍ୟରେ ବୟସର ତାରତମ୍ୟ ମାତ୍ର ତିନିବର୍ଷ । ପୃଥିବୀ ତଥା ଜୀବନ ସମ୍ପର୍କରେ ଉଭୟଙ୍କର ଧାରଣା ଥିଲା ଖୁବ୍ କମ୍ । ସ୍ୱାମୀ ଓ ସ୍ତ୍ରୀର ସଜ୍ଞା ହୁଏତ ସେମାନେ ଜାଣି ନଥିଲେ ବିବାହ କଲାବେଳେ; ଅଥଚ ସେମାନେ ପ୍ରକୃତରେ ସ୍ୱାମୀ ସ୍ତ୍ରୀ —ଜଣେକର ଜୀବନ ଅନ୍ୟ ଜଣଙ୍କ ଜୀବନ ସହିତ ଓତଃପ୍ରୋତ ଭାବରେ ସଶ୍ଳିଷ୍ଟ ।

ତେବେ ସେ ବିବାହ ଗୋପବନ୍ଧୁଙ୍କ ଭବିଷ୍ୟତ ଶିକ୍ଷା ଉପରେ କୌଣସି କାହିଁକି ଆଦୌ ପ୍ରଭାବ ପକାଇ ନଥିଲା । ସେ ରୀତିମତ ଭାବେ ପ୍ରାଥମିକ ଶିକ୍ଷା ଶେଷ କରି ରୂପଦେଈପୁର ମାଧ୍ୟମିକ ଭର୍ଣ୍ଣାକୁଲର ସ୍କୁଲରେ ନାମ ଲେଖାଇଥିଲେ । ରୂପଦେଈପୁରର ଦୂରତ୍ୱ ସୁଆଣ୍ଡୋଠାରୁ ପାଞ୍ଚ ମାଇଲ । ସେଠାରେ ମାଧ୍ୟମିକ ଶିକ୍ଷା ସମାପ୍ତ କରି ସେ ପୁରୀ ଜିଲ୍ଲା ସ୍କୁଲରେ ଭର୍ତ୍ତି ହୋଇଥିଲେ ।

ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କାଳରେ ଇଂରାଜୀ ତଥା ଓଡ଼ିଆ ସାହିତ୍ୟରେ ଗୋପବନ୍ଧୁଙ୍କ ଉତ୍ତମ ଜ୍ଞାନ ନଥିଲା କିନ୍ତୁ ନିଜର ଗଭୀର ଅଧ୍ୟବସାୟ ଓ ଉଭୟ ସାହିତ୍ୟ ପ୍ରତି ଅନୁରାଗର ପରିଣାମ ସ୍ୱରୂପ ସେ ନିଜ ଶ୍ରେଣୀର ଜଣେ ଉତ୍କୃଷ୍ଟ ଛାତ୍ରରୂପେ ପରିଗଣିତ ହେବାର ସୁଯୋଗ ଲାଭ କରିଥିଲେ ।

ଛାତ୍ର ଗୋପବନ୍ଧୁ କଥା କହିବାବେଳେ ପାଟି ସାମାନ୍ୟ ଖନା ମାରୁଥିଲା । ସେହି କାରଣରୁ ସେ ରାତିରେ ଶୋଇବାକୁ ଯିବା ପୂର୍ବରୁ କିଛି ବାଲିଗରଡ଼ା ଜିଭତଳେ ରଖି ଶୋଉଥିଲେ ଏବଂ ପ୍ରତିଦିନ ସକାଳ ସଞ୍ଜରେ କିଛି ସମୟ ପାଇଲେ ଭାଷଣ ଦେବା ଆରମ୍ଭ କରି ଦେଉଥିଲେ । ସେ ଭାଷଣ ଶୁଣିବା ପାଇଁ ଶହ ଶହ ଜନତା ସେତେବେଳେ ଉପସ୍ଥିତ ରହୁନଥିଲେ ବା ସାମିଆନା ବାନ୍ଧା ହେଉନଥିଲା । ଆକାଶ ଥିଲା ତାଙ୍କର ସେତେବେଳର ସାମିଆନା ଓ ଶ୍ରୋତୃବର୍ଗ ଥିଲେ ଦଣ୍ଡହରପାଳ । ଆକାଶକୁ

ଗୃହିଁ ବା ବଗ୍‌ବଳସ୍ଥଳୁ ଗୃହିଁ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଗୋପବଂଧୁ ଭାଷଣ ଦେବା ଅଭ୍ୟାସ କରୁଥିଲେ ।

ସେ ପ୍ରକାର କାର୍ଯ୍ୟ ଅନ୍ୟମାନଙ୍କୁ ଉଦ୍‌ଭଟ ମନେ ହେଉଥିଲା । ସମାଲୋଚନା ତ ହେବାର କଥା—ଗୋପବନ୍ଧୁଙ୍କ ସହପାଠୀମାନେ ତାଙ୍କ ଆଗରେ ତାହାଙ୍କୁ ଆକ୍ଷେପ କରୁଥିଲେ "ଗୋପ, ଦେଶଟାକୁ ଠେକ ଧରିବ" । ସେ ପ୍ରକାର ସମାଲୋଚନାର ମୂଳ କାରଣ ଥିଲା ସେଇ ବାଲ୍ୟକାଳରୁ ହିଁ ଉଗ୍ର ଜାତୀୟ ପ୍ରୀତି ବା ଦେଶପ୍ରୀତି ଗୋପବନ୍ଧୁଙ୍କ ପ୍ରତ୍ୟେକଟି କାର୍ଯ୍ୟକଳାପ ତଥା କଥାବାର୍ତ୍ତାରେ ପରିଲକ୍ଷିତ ହେଉଥିଲା ।

ସେତେବେଳର ଶିକ୍ଷା ବର୍ତ୍ତମାନ ଭଳି ଥିଲେ ମଧ୍ୟ ପରୀକ୍ଷାପଦ୍ଧତି ଅଲଗା ପ୍ରକାରର ଥିଲା । ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲରେ ପ୍ରଥମେ ସପ୍ତମ 'ବି' ଶ୍ରେଣୀରେ ନାମ ଲେଖାଇ ଥିଲେ । ସ୍କୁଲରେ ଭର୍ତ୍ତି ହେବାର ଛଅମାସ ପରେ ପରୀକ୍ଷା ଦେଇ ସେ ଶ୍ରେଣୀର ବର୍ଷକର ପାଠ୍ୟକ୍ରମ ଶେଷକରି ସପ୍ତମ 'ଏ' ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇଥିଲେ ଓ ସେହି ଶ୍ରେଣୀରୁ ଏକା ଦୁଇଟି ପ୍ରମୋଶନ ପାଇ ନବମ ଶ୍ରେଣୀକୁ ସିଧାସଳଖ ଉତ୍ତୀର୍ଣ୍ଣ ହେବାର ସୁଯୋଗ ପାଇଥିଲେ ।

ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରିବା ଭିତରେ ଗୋପବନ୍ଧୁଙ୍କ ଜୀବନରେ ଏକ ଉଲ୍ଲେଖନୀୟ ଘଟଣା ଥିଲା ମୋକ୍ତାର ରାମଚନ୍ଦ୍ର ଦାସଙ୍କ ସହିତ ସମ୍ପର୍କ । ସେ ଥିଲେ ଜଣେ ଉଗ୍ର ଦେଶପ୍ରେମୀ । ସେତିକିବେଳେ ରାମଚନ୍ଦ୍ର ଦାସଙ୍କ ବ୍ୟକ୍ତିତ ବାଧ୍ୟବାଧକଭାବେ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିବା ମୋକ୍ତାର ପୁରୀରେ ନଥିଲେ । ସେତେବେଳେ ରାମଚନ୍ଦ୍ର ଦାସଙ୍କର ଘର ଥିଲା ଜାତୀୟବାଦୀମାନଙ୍କର ବୈଠକଖାନା । ଗୋପବନ୍ଧୁ ପ୍ରତ୍ୟହ ସନ୍ଧ୍ୟାରେ ସେଠାକୁ ଯାଉଥିଲେ ଏବଂ ସେଠାକୁ ଆଉ କେତେଜଣ ଛାତ୍ର ଯୁବକ ମଧ୍ୟ ଆସୁଥିଲେ । ସେମାନେ ରାତିର ଅନେକ ସମୟ ପର୍ଯ୍ୟନ୍ତ ବିଭିନ୍ନ ଆଲୋଚନା କରୁଥିଲେ । ଅନେକ ସମୟରେ ରାମଚନ୍ଦ୍ର ବାବୁ ସେମାନଙ୍କୁ ଜଳଖିଆ ଖୁଆଉଥିଲେ ଓ ସ୍କୁଲ କଥା ପଢ଼ାପଢ଼ି

ସମ୍ପର୍କରେ ଆଲୋଚନା କରୁଥିଲେ । ଯଦିଓ ତାଙ୍କର ବୟସ ସେତେବେଳେ ଯଥେଷ୍ଟ ହୋଇନଥିଲା (ପ୍ରାୟ ୨୦।୨୨ ବର୍ଷ) ତଥାପି ସେ ଥିଲେ ପୁରୀର ଜଣେ ବିଶିଷ୍ଟ ଆଇନଜୀବୀ । ତାଙ୍କର ଗର୍ବ, ଅହଂକାର ଆଦୌ ନଥିଲା । ଅଳ୍ପ ବୟସର ସ୍କୁଲ ପିଲାଙ୍କ ସହିତ ସାମିଲ୍ ହୋଇ ଯାଇପାରୁଥିଲେ ଏବଂ ସେମାନଙ୍କ ସହିତ ବିଭିନ୍ନ ଆଲୋଚନା କରୁଥିଲେ । ଦେଶ ଓ ଦଶର ସେବାରେ ନିଜକୁ ନିୟୋଜିତ କରିବା ପାଇଁ ପ୍ରେରଣା ଦେଉଥିଲେ ଛାତ୍ରମାନଙ୍କୁ । ସେ 'ବଙ୍ଗବାସୀ', 'ବସୁମତୀ', 'ସଞ୍ଜୀବନୀ' ପରି ବଙ୍ଗଳା ପତ୍ରିକା ସହିତ ବାଲେଶ୍ୱରରୁ ପ୍ରକାଶ ପାଉଥିବା "ସମ୍ବାଦବାହିକା" ଏବଂ "ଉତ୍କଳ ଦୀପିକା" ନିୟମିତ ମଗାଉଥିଲେ । ପ୍ରତିଦିନ ସନ୍ଧ୍ୟାରେ ସେହିସବୁ ସମ୍ବାଦପତ୍ର ପାଠକରି ତା ଉପରେ ସଭିଏଁ ମିଳିମିଶି ଆଲୋଚନା ତଥା ସମାଲୋଚନା କରୁଥିଲେ ।

ସେମାନଙ୍କର ବୈଠକୀ ସରୁସରୁ ରାତି ପ୍ରାୟ ବାରଟା ବାଜିଯାଉଥିଲା । ସେହି ଛାତ୍ର ବୟସରୁ ହିଁ ଗୋପବନ୍ଧୁଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଅନୁରାଗ ଥିଲା ।

ସେହି ସମୟରେ ଓଡ଼ିଆ ସାହିତ୍ୟାକାଶରେ ଭୂମୁଳ ଝଡ଼ । ଝଡ଼ର କାରଣ ନୂତନ ଓ ପୁରାତନ ସାହିତ୍ୟ ତଥା ଅନୁରାଗୀମାନଙ୍କ ମଧ୍ୟରେ ସଂଘର୍ଷ ! ଉଭୟ ଗୋଷ୍ଠୀଙ୍କୁ ଆଧାର କରି ଗୋଟିଏ ଗୋଟିଏ ପତ୍ରିକା 'ଇନ୍ଦ୍ରଧନୁ' ଓ 'ବିଜୁଳି' । ଇନ୍ଦ୍ରଧନୁ ଥିଲା ପୁରାତନ କବିମାନଙ୍କ ସପକ୍ଷରେ ଓ ବିଜୁଳି ଆଧୁନିକ ସାହିତ୍ୟର ପୃଷ୍ଠପୋଷକତା କରୁଥିଲା । ଥରେ ବିଜୁଳିରେ ପୁରାତନ ସାହିତ୍ୟିକମାନଙ୍କୁ ଅପମାନିତ କରି ଗୋଟିଏ କବିତା ପ୍ରକାଶ ପାଇଥିଲା ଯାହାର ଗୋଟିଏ ପଂକ୍ତି ଥିଲା "ଠେଙ୍ଗା ଗଙ୍ଗାଧର ଫେଙ୍ଗା ମାୟାଧର ନକଲିଆ ମଧୁ କଳା ବାରିଷ୍ଟର"—ଏହା ଗୋପବନ୍ଧୁଙ୍କୁ ଅଡୁଆ ଅଡୁଆ ମନେ ହୋଇଥିଲା । ସେହି ସମୟରେ ସେ ପୁରାତନ ସାହିତ୍ୟାନୁରାଗୀ ଇନ୍ଦ୍ରଧନୁରେ ଗୋଟିଏ କବିତା ପ୍ରକାଶ କରିଥିଲେ ଯାହାର ଗୋଟିଏ ପଂକ୍ତିରେ ସେତେବେଳର ଓଡ଼ିଶାର ସ୍କୁଲ ଇନ୍ସପେକ୍ଟର କବିବର ରାଧାନାଥ ରାୟଙ୍କୁ ଆକ୍ଷେପ କରି ଲେଖା-ଯାଇଥିଲା "ବାଉର ସାହିରେ ଶୃଗାଳକେଶରୀ ପରି ହେଉଥାଏ ଗଣ୍ୟ"

ତାର ପରିଣାମ ସ୍ୱରୂପ ଗୋପବନ୍ଧୁ ସ୍କୁଲ ଇନ୍‌ସପେକ୍ଟର ଜବବର ରାଧାନାଥ ରାୟ ସ୍କୁଲ ପରିଦର୍ଶନ କରିବା ଛଳରେ ଆସି ଗୋପବଂଧୁଙ୍କୁ ଜୋରିମାନା କଲେ । ମୋକ୍ତ୍ୟାର ରାମଚନ୍ଦ୍ର ଦାସ ଏହା ଶୁଣି ପ୍ରଧାନଶିକ୍ଷକ ଗୋପାଳ ଦାସ ଓ ସରକାରଙ୍କ ନିକଟକୁ ଗଲେ ଏବଂ ସ୍କୁଲରୁ ଗୋପବଂଧୁଙ୍କ ନାମ କଟାଇ ଆଣିବାର ଜିଦ୍ କଲେ । ପ୍ରଧାନଶିକ୍ଷକ ଇନ୍‌ସପେକ୍ଟରଙ୍କୁ ଜଣାଇବା ପରେ ଇନ୍‌ସପେକ୍ଟରଙ୍କ ନିର୍ଦ୍ଦେଶରେ ସେ ଜୋରିମାନା ଦଣ୍ଡରୁ ମୁକ୍ତି ମିଳିଥିଲା ।" (୧) ତଥାପି ତାଙ୍କର ବାର୍ଷିକ ବୃତ୍ତି କଟାଇ ଦିଆଯାଇଥିଲା ସେଇ କବିତା ପାଇଁ । ଏହାଥିଲା ୧୮୯୪ ମସିହାରେ ଏକ ଘଟଣା । ସେତେବେଳକୁ ତାଙ୍କର ବୟସ ହୋଇଥିଲା ସତର ।

ପୁରାତନ ସାହିତ୍ୟ ପ୍ରତି ଅନୁରାଗ ଗୋପବଂଧୁଙ୍କର ଯଥେଷ୍ଟ ଥିଲା । ସେ ବେଳେବେଳେ ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଉପେନ୍ଦ୍ର ଭଞ୍ଜ ପ୍ରଭୃତିଙ୍କ ରଚନାବଳୀର ପ୍ରଶଂସା କରୁଥିଲେ ।

ପ୍ରଚଳିତ ସାମାଜିକ ପରମ୍ପରାକୁ ମାନିନେଇ ପଣ୍ଡିତ ଗୋପବଂଧୁ ବାରବର୍ଷ ବୟସରେ ପ୍ରାଥମିକ ଶିକ୍ଷା ଲାଭ କରିବା ସମୟରେ ବିବାହ କରି ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିବାବେଳେ ୧୭ ବର୍ଷ ବୟସରେ ୧୮୯୨ ମସିହାରେ ଗୃହୀ ପାଲଟି ଯାଇଥିଲେ । ଯଦିଓ ତାଙ୍କର ନିମିତ୍ତକୃତ୍ୟ ସମ୍ପାଦନ ହୋଇଥିଲା ତଥାପି ତାଙ୍କର ଉଚ୍ଚଶିକ୍ଷା କ୍ଷେତ୍ରରେ ସାମାନ୍ୟତମ ପ୍ରତିବଂଧକ ସୃଷ୍ଟି ହୋଇଥିଲା ବୋଲି ସେ ମନେ କରିନଥିଲେ । ଏକା ସାଙ୍ଗରେ ସେ ଦୁଇଟି ଜୀବନ ଅତି ସୁରୁଖୁରୁରେ ଚଲାଇ ନେଇ ପାରିଥିଲେ—ଗୋଟିଏ ବିଦ୍ୟାର୍ଥୀ ଜୀବନ ଓ ଅନ୍ୟଟି ଗୃହୀ ଜୀବନ । ଆମ ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି "ମନଥିଲେ ରଙ୍ଗା ଘୁଷୁରୀ ଗାଡିଆ ଗଙ୍ଗା" ।

ଗୋପବନ୍ଧୁ ଯେତେବେଳେ ପୁରୀ ଜିଲ୍ଲା ସ୍କୁଲରୁ ପାଠ୍ୟକ୍ରମ ଶେଷକରି କଲେଜରେ ଶିକ୍ଷାଲାଭ କରିବାକୁ ମନସ୍ଥ କରିଥିଲେ ଓ ଏଫ୍. ଏ.

(୧) ପଣ୍ଡିତ ବାସୁଦେବ ରଥ—ସମାଜର ୬୭ତମ ଶ୍ରାଦ୍ଧ ସଂଖ୍ୟା ।
ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ସଂଗୃହୀତ ।

ଶ୍ରେଣୀରେ ନାମ ଲେଖାଇବାକୁ ରେଭେନ୍‌ସା କଲେଜ ଯିବାପାଇଁ ସ୍ଥିର କରିଥିଲେ ସେତେବେଳେ ତାଙ୍କ ପରିବାରକୁ ଜ୍ୟେଷ୍ଠ ଭ୍ରାତା ଶ୍ରୀଯୁକ୍ତ ନାରାୟଣ ଦାସଙ୍କ ମାର୍ଫତରେ ଖର୍ଚ୍ଚଦେଇ ଯାଇଥିଲେ । କାରଣ ସେତେବେଳକୁ ତାଙ୍କ ପିତାଙ୍କ ମୃତ୍ୟୁ ହୋଇଯାଇଥିଲା ।

ଆଜିକାର ଭଳି ସେତେବେଳେ ଓଡ଼ିଶାରେ ମାଧ୍ୟମିକ ଶିକ୍ଷାବୋର୍ଡ ନଥିଲା ମୁଖ୍ୟତଃ ଓଡ଼ିଶା ବୋଲି ଏକ ସ୍ୱତନ୍ତ୍ର ପ୍ରଦେଶ ମଧ୍ୟ ନଥିଲା । ତେଣୁ କଲିକତା ବିଶ୍ୱବିଦ୍ୟାଳୟର ଅଧୀନରେ ୧୮୯୮ ମସିହାର ଗୋପବନ୍ଧୁ ପୁରୀ ଜିଲ୍ଲା ସ୍କୁଲରୁ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଗୋପବନ୍ଧୁଙ୍କର ସେତେବେଳର ଜଣେ ଘନିଷ୍ଠ ସାଙ୍ଗ ପଣ୍ଡିତ ବାସୁଦେବ ରଥ ସେହିବର୍ଷ ସଂସ୍କୃତ କଲେଜରେ କାବ୍ୟ ଉପାଧି ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ଉଭୟେ ପରୀକ୍ଷାରେ କୃତକାର୍ଯ୍ୟ ହେବାଭଳି ଶୁଭ ସମ୍ବାଦମାନ ନେଇ ମୋକ୍ତାର ରାମଚନ୍ଦ୍ର ଦାସଙ୍କ ନିକଟରେ ଉପସ୍ଥିତ ହୋଇଥିଲେ ସେ ଅତ୍ୟନ୍ତ ଖୁସି ହୋଇ ଯାଇଥିଲେ ଏବଂ ଆଶୀର୍ବାଦ କରିଥିଲେ । ସେମାନଙ୍କ ଆଗରେ ସେ ପ୍ରକାଶ କରିଥିଲେ ଯେ ତାଙ୍କର ଦୀର୍ଘଦିନର ମୋକ୍ତାରୀ ପେଶାରୁ ଅର୍ଜିତ ଧନରେ ସେ କିଣିଥିବା ୧୮ ଗୁଣ୍ଠ ଜମିରେ ଦେଶର ଦରିଦ୍ର ଛାତ୍ରମାନଙ୍କ ପାଇଁ ଏକ ଛାତ୍ରାବାସ ନିର୍ମାଣ କରିବେ ଏବଂ ମୁଷ୍ଟି ଭିକ୍ଷାକରି ଆଣି ପିଲାଙ୍କ ରହିବା ଖର୍ଚ୍ଚ ପରିଚାଳିତ ହେବ । ପରିଚାଳନା କରିବେ ସେଇମାନେ । ସେ ସେଇଠି ତାଙ୍କର ଇଚ୍ଛାପ୍ରକାଶ କରିଥିଲେ ଯେ ଗୋପବନ୍ଧୁ ଆଇନ ଅଧ୍ୟୟନ କରି ରାଜଦ୍ୱାରରେ ଯୋଗଦେବା ଉଚିତ । ରାମଚନ୍ଦ୍ର ବାବୁ ପ୍ରଥମେ ଇଚ୍ଛା କରିଥିଲେ ଯେ କ୍ରୟ କରିଥିବା ଜମିରେ ଏକ ସୁନ୍ଦର ଗୃହ ନିର୍ମାଣ କରି ସେଠାରେ ରହିବେ । କିନ୍ତୁ ପରେ ପରେ ସ୍ଥିର କରିଥିଲେ ଯେ ସେ ପବିତ୍ର ପୀଠରେ ସ୍ତ୍ରୀକୁ ନେଇ ରହିବା ସଙ୍ଗତ ହେବ ନାହିଁ । ଦେଶରେ ଅନେକ ଅନେକ ଅଭାବଗ୍ରସ୍ତ ଅଥଚ ପଢ଼ିବା ପାଇଁ ଆଗ୍ରହୀ ଛାତ୍ର ଅଛନ୍ତି । ତାହା ସେମାନଙ୍କ ଲାଗି ବ୍ୟବହାର କରାଯିବା ଉଚିତ । ସେଇ ଭାବଧାରାରେ ଗୋପବନ୍ଧୁଙ୍କ ସମଗ୍ର ଚେତନା ଅନୁପ୍ରାଣିତ ହେବା ଏକାନ୍ତ ସ୍ୱାଭାବିକ ।

ସେହିବର୍ଷ ଅର୍ଥାତ୍ ୧୮୯୯ ଠାରୁ ଆରମ୍ଭ ହୋଇଥିବା ବ୍ରାହ୍ମଣ ସମିତିର ଛାତ୍ରାବାସ ସେଇ ଜମି ଉପରେ ଦଣ୍ଡାୟମାନ ।

ପୁରୀର ରଥଯାତ୍ରା ସମୟରେ ହଇଜା ମହାମାରୀ ହେବାଟା ଏକ ସାଧାରଣ ଘଟଣା ଥିଲା ସେତେବେଳେ । ୧୮୯୭ ଖ୍ରୀଷ୍ଟାବ୍ଦ ବେଳକୁ ପ୍ରଥମଥର ପାଇଁ ଦକ୍ଷିଣଭାରତ ସହିତ ପୁରୀର ସଂଯୋଗ ହୋଇଥିଲା ରେଳପଥରେ । ସେତେବେଳେ ସେଇ ରେଳପଥର ନାମ ଥିଲା ଇଷ୍ଟକୋଷ୍ଟ ରେଳବାଇ ଓ ପୁରୀ ଷ୍ଟେସନ ଥିଲା ଗୁଡ଼ନଳା ଗ୍ରାମ ନିକଟରେ । ଅନ୍ୟାନ୍ୟ ଅଞ୍ଚଳ ସହିତ ରେଳପଥର ସଂଯୋଗ ହେତୁ ରଥଯାତ୍ରା ସମୟରେ ଅସମ୍ଭବ ଲୋକ ଭିଡ଼ ହେଉଥିଲା । ସେ ଥିଲା ୧୮୯୯ ମସିହାର ଘଟଣା ।

ଯୋଗାଯୋଗର ସୁବିଧା ହୋଇଥିବା ଦୃଷ୍ଟିରୁ ଅନ୍ୟାନ୍ୟ ବର୍ଷ ତୁଳନାରେ ସେ ବର୍ଷ ରଥଯାତ୍ରା ବେଳକୁ ପୁରୀର ଜନସମାଗମ ଅତ୍ୟନ୍ତ ବେଶୀ ହୋଇଥିଲା । ସ୍ୱାସ୍ଥ୍ୟ ପ୍ରତିଷେଧକ ବ୍ୟବସ୍ଥା ଉତ୍ତମ ପ୍ରକାରର ହୋଇଥିଲେ ମଧ୍ୟ ଅନ୍ୟାନ୍ୟ ଅନେକ ବର୍ଷ ଭଳି ହଇଜା ଆରମ୍ଭ ହୋଇଥିଲା ଓ ମାରାତ୍ମକଭାବେ ସମଗ୍ର ଅଞ୍ଚଳରେ ବ୍ୟାପି ଯାଇଥିଲା । ପୁରୀ ସହରର ପ୍ରତ୍ୟେକ ରାସ୍ତା, ଗଳିକନ୍ଧି ଓ ପୋଖରୀ ହୁଡ଼ା ଉପରେ ଅସଂଖ୍ୟ ମୃତଦେହ ପଡି ରହିଥିବାର ଦେଖାଯାଇଥିଲା । କେବଳ ସେତିକି ନୁହେଁ ପୁରୀ ଆସିବା ଲାଗି ଜଗନ୍ନାଥ ସଡ଼କରେ ମଧ୍ୟ ମୃତଦେହ । ସରକାର ହିସାବ ଦେଇ କୁଆଡ଼େ କହିଥିଲେ ଯେ ସେ ବର୍ଷ ହଇଜାରେ ପ୍ରାଣ ହରାଇଥିବା ଲୋକଙ୍କ ସଂଖ୍ୟା ପ୍ରାୟ ୭୫ ହଜାର ।

ମୋକ୍ତାର ରାମଚନ୍ଦ୍ର ଦାସ ସେତେବେଳେ ପୁରୀ ମ୍ୟୁନିସିପାଲିଟି ବୋର୍ଡର ଜଣେ ସଦସ୍ୟ ଥିଲେ । ସେ ଗୋପବନ୍ଧୁ ଓ ତାଙ୍କଭଳି କେତେଜଣ ତାଙ୍କ ଅନୁଗତ ଦେଶପ୍ରେମୀ ଛାତ୍ରଙ୍କୁ ସାଙ୍ଗରେ ଧରି ରୋଗୀ ସେବା ତଥା ବିପନ୍ନ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଆଗୁସାର ହୋଇପଡ଼ିଥିଲେ । ସହରର ଯେଉଁ ଦିଗକୁ ଗଲେ କେବଳ ଶବ ଏବଂ ଶବ । ସେ ଶବଗୁଡ଼ିକୁ ସତ୍କାର କରିବାକୁ କେହି ଆଗେଇ ଆସୁ

ନଥିଲେ ! ଗୋପବଂଧୁ ଓ ତାଙ୍କ ଦଳ ସେଥିପାଇଁ ଅଣ୍ଟା ଭିଡ଼ିଥିଲେ ମୋକ୍ତ୍ୟାର ରାମଚନ୍ଦ୍ରଙ୍କ ଅପୂର୍ବ ପ୍ରେରଣାରେ ।

ତଥାପି ଅବସ୍ଥା ଏତେ ଅସମ୍ଭାଳ ହୋଇଥିଲା ଯେ ସରକାର କଲିକତାରୁ ଜଣେ ସ୍ୱାସ୍ଥ୍ୟ ବିଭାଗର ଗୋରା ଅଫିସରଙ୍କୁ ପୁରୀ ଆସିବାକୁ ନିର୍ଦ୍ଦେଶ ଦେଇଥିଲେ । ରାସ୍ତାଘାଟରେ ଯେଉଁଠି ଯେତେ ମୃତଦେହ ପଡ଼ିଥିଲା ସେଗୁଡ଼ିକୁ ସବୁ ୧୭ଟି ବଡ଼ ବଡ଼ ବଖରାରେ ପ୍ରଥମେ ଗଦେଇ ଦିଆଯାଇଥିଲା । ତାହା ପରେ ସମୁଦ୍ରକୂଳରେ ଏକ ବିରାଟ ଖାଲ କବରଖାନା ଖୋଳାଇ ତାର ତଳେ ତଥା ଚାରିକଡ଼ରେ କାଠ ଭର୍ତ୍ତିକରି ମୁର୍ଦ୍ଦାରଗୁଡ଼ିକୁ ତା ଭିତରେ ପୂରାଇ ଦିଆଗଲା ଓ ଉପରେ କାଠରଖି ତା ଉପରେ କିରୋସିନ ଢ଼ାଳି ନିଆଁ ଲଗାଇ ଦିଆଯାଇଥିଲା । ସେ ନିଆଁ ଦୀର୍ଘ ସତର ଦିନ ପର୍ଯ୍ୟନ୍ତ ଜଳୁଥିଲା । ସେହିଭଳି ଆଉ ଏକ ସାଧାରଣ କବରଖାନା ଖୋଳା ଯାଇଥିଲା ମିଟିକାଣି ଶ୍ମଶାନରେ ।

ସେ ସରକାରୀ ବ୍ୟବସ୍ଥା ବାଦ୍ ଗୋପବନ୍ଧୁ ଓ ତାଙ୍କର ସହକର୍ମୀ ଦଳ ମଧ୍ୟ ଅନେକ ଶବ ସଂସ୍କାର କରିଥିଲେ ସେମାନଙ୍କ ବ୍ୟକ୍ତିଗତ ଉଦ୍ୟମରେ ।



## ॥ ତିନି ॥

# ଚିନ୍ତାନଳେ ଭସ୍ମ ନୁହେ ସେନେହ ବନ୍ଧନ

ଊନବିଂଶ ଓ ବିଂଶ ଶତାବ୍ଦୀର ସନ୍ଧିକ୍ଷଣ ଥିଲା ଓଡ଼ିଆଭାଷାର ସ୍ଥିତିରକ୍ଷା ପ୍ରତିଷ୍ଠା ପାଇଁ ସନ୍ଧିସ୍ଥଳ । ସେତେବେଳେ ଓଡ଼ିଶା ନାମରେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ନଥିଲା କି ଓଡ଼ିଆ ଭାଷା ନାମରେ ଗୋଟିଏ ସ୍ୱତନ୍ତ୍ର ଭାଷା ଅଛି ବୋଲି ସ୍ୱୀକାର କରିବାକୁ ତଥାକଥିତ ଓଡ଼ିଶାର ଶାସକମାନେ ପ୍ରସ୍ତୁତ ନଥିଲେ । ସେତେବେଳେ ଭୌଗୋଳିକ ଓଡ଼ିଶାର ଅର୍ଥ ବୁଝାଉଥିଲା କଟକ, ପୁରୀ ଓ ବାଲେଶ୍ୱର—ପ୍ରାୟ ଏହି ତିନୋଟି ଜିଲ୍ଲାକୁ । ଗଞ୍ଜାମ ଜିଲ୍ଲା ଥିଲା ମାନ୍ଦ୍ରାଜ ସରକାରଙ୍କ ଶାସନାଧୀନ । ସମ୍ବଲପୁର ଜିଲ୍ଲା ଥିଲା ମଧ୍ୟପ୍ରଦେଶ ସରକାରଙ୍କ ଅଧୀନରେ । ମେଦିନୀପୁର, ସିଂହଭୂମି ଓ ସେହି ନିକଟସ୍ଥ ଓଡ଼ିଆ ଅଞ୍ଚଳଗୁଡ଼ିକର ଅବସ୍ଥା ସେଇଆ ।

ବଙ୍ଗଳା ସଂସ୍ପର୍ଶରେ ଅତ୍ୟଧିକ ଆସି ମେଦିନୀପୁରର ଭାଷା ବଙ୍ଗଳା ଭାଷାର ଅତି ନିକଟବର୍ତ୍ତୀ ହୋଇପାରିଥିଲା ଓ ସେଠା ଜନସାଧାରଣ ବଙ୍ଗଳା ଭାଷାଦ୍ୱାରା ପ୍ରଭାବିତ ହୋଇଥିବାବେଳେ ଛୋଟ ନାଗପୁରର ପ୍ରଭାବ ପଡ଼ିଥିଲା ସିଂହଭୂମି ଏବଂ ତତ୍ ନିକଟସ୍ଥ ଅଞ୍ଚଳଗୁଡ଼ିକ ଉପରେ । ତେଣୁ ସେଠା ଲୋକେ ହିନ୍ଦି ଭାଷାର କବଳିତ ହେବା ସ୍ୱାଭାବିକ ।

ଗଞ୍ଜାମ ଅଞ୍ଚଳର ଶାସନକର୍ତ୍ତା ଥିଲେ ମାନ୍ଦ୍ରାଜ ସରକାର । ମାନ୍ଦ୍ରାଜ ସରକାରଙ୍କ ପ୍ରାୟ ସମସ୍ତ କର୍ମଚାରୀ ଥିଲେ ତେଲୁଗୁ ଭାଷାଭାଷୀ । ଓଡ଼ିଆ ଭାଷା ସହିତ ପଡ଼ୋଶୀ ତେଲୁଗୁମାନଙ୍କର କୌଣସି ପ୍ରକାର ସାମଞ୍ଜସ୍ୟ ନଥିଲା । ସ୍କୁଲ କଲେଜଠାରୁ ଆରମ୍ଭ କରି କୋର୍ଟ କଚେରୀ ପର୍ଯ୍ୟନ୍ତ ସବୁଠାରେ ତେଲୁଗୁ

ଭାଷା ପ୍ରଚଳିତ ହେଉଥିଲା । ସେଇଠି ଓଡ଼ିଆ ଭାଷାର ପ୍ରଶ୍ନ ନଥିଲା । ସରକାରୀ କର୍ମଚାରୀ ଥିଲେ ତେଲୁଗୁ କମ୍ବା ତାମିଲ । ତେବେ ସେତେବେଳେ ସୁଦ୍ଧା ଓଡ଼ିଆ ସାହିତ୍ୟର ପ୍ରଧାନ ପୀଠସ୍ଥଳ ଥିଲା ଗଞ୍ଜାମ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ "ଇଂରେଜମାନଙ୍କ ଅଧିକାର ଠିକ୍ ପୂର୍ବରୁ ଓ ଠିକ୍ ପରେ ଓଡ଼ିଆ ସାହିତ୍ୟର ଯଥାର୍ଥ ସ୍ଥାନ ଥିଲା ଗଞ୍ଜାମ । ସେମାନେ ଓଡ଼ିଶା ଆସିବାକୁ ଭାରି ଛଟପଟ ହେଉଥିଲେ । ବିଶେଷରେ ତେଲେଙ୍ଗା ଭାଷାର ଓଡ଼ିଆ ଭାଷା ସଙ୍ଗେ କୌଣସି ସମ୍ପର୍କ ନଥିବାରୁ ଓ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ସବୁ କର୍ମଚାରୀ ତେଲେଙ୍ଗା ତାମିଲ ହେଉଥିବାରୁ, ପୁଣି ସ୍କୁଲ କଚେରୀରେ ଓଡ଼ିଆ ଭାଷା ନଚଳି ତେଲୁଗୁ ଭାଷା ଚଳୁଥିବାରୁ ସେଠା ଲୋକେ ଭାରି ବ୍ୟସ୍ତ ହେଉଥିଲେ । ଜୟପୁରର ମଧ୍ୟ କେହି କେହି ସେଥିରେ ଯୋଗ ଦେଉଥିଲେ । ୧୯୦୨ ରେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳରୁ ଲୋକଙ୍କୁ ନିମନ୍ତ୍ରଣ କରି ସେମାନେ ଗୋଟିଏ ସମ୍ମିଳନୀ ସଭା ଡାକିଲେ । ଗୋପବନ୍ଧୁ ଦାସେ ସେ ସଭାକୁ ଯାଇଥିଲେ ।" (୧)

ତାହାହିଁ ଥିଲା ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଉଦ୍ଦେଶ୍ୟରେ ଗଠିତ ହୋଇଥିବା ଉତ୍କଳ ସମ୍ମିଳନୀର ପ୍ରଥମ ପାହାଚ ।

୧୯୦୨ ମସିହାରେ ଗଞ୍ଜାମର ବିଚ୍ଛିନ୍ନାଞ୍ଚଳଗୁଡ଼ିକୁ ଏକତ୍ରିକରଣ କରି ଓଡ଼ିଶା ସହିତ ମିଶାଇବା ଲାଗି ବ୍ରହ୍ମପୁରଠାରେ ଗଞ୍ଜାମ ଜିଲ୍ଲା ସମ୍ମିଳନୀ ବସିଥିଲା । ସେଥିରେ ସଭାପତିତ୍ୱ କରିଥିଲେ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ । ଉକ୍ତ ସଭାରେ ପୁରୀର ମୋକ୍ତାର ରାମଚନ୍ଦ୍ର ଦାସ ଯୋଗ ଦେଇଥିଲେ ଏବଂ ସେ ପ୍ରଥମ ଦିନର ସଭାରେ ହିଁ ପ୍ରସ୍ତାବ କରିଥିଲେ ଯେ ସମଗ୍ର ଓଡ଼ିଶାର ବିଭିନ୍ନ ସମ୍ପ୍ରଦାୟର ଲୋକଙ୍କୁ ନେଇ ଗୋଟିଏ ସମ୍ମିଳନୀ ହେଉ ଏବଂ ସେହି ସମ୍ମିଳନୀରେ ସବୁଠାରୁ ମୁଖ୍ୟସ୍ଥାନ ରାଜନୀତି ଆଲୋଚନାକୁ ଦିଆଯାଉ । ସେଠାରେ ଏହା ମଧ୍ୟ ତାଙ୍କର ପ୍ରସ୍ତାବ ଥିଲା ଯେ ସେ ସଭା ସହିତ ମଧୁସୂଦନ ଦାସଙ୍କୁ ସଂଶ୍ଳିଷ୍ଟ କରାଯାଉ କାରଣ ସେଥିପାଇଁ ସେ ହିଁ ଉପଯୁକ୍ତ ବ୍ୟକ୍ତି ।

---

(୧) ଆତ୍ମଜୀବନୀ—ପଣ୍ଡିତ ନୀଳକଣ୍ଠ, ପୃଷ୍ଠା ୬୯

ତାହାଣ୍ଡି ହୋଇଥିଲା । ତା ପରଦିନ ମଧୁବାବୁ ସେଠାରେ ଉପସ୍ଥିତ ହୋଇଥିଲେ ।

ସେତେବେଳକୁ ମଧୁସୂଦନ କଲିକତା ହାଇକୋର୍ଟ ଛାଡ଼ି କଟକ ଚାଲି ଆସିଥିଲେ ଏବଂ ସେଠାରେ ଓକିଲାତି ଆରମ୍ଭ କରି ଦେଇଥିଲେ । ଓଡ଼ିଶା ଚାଲିଆସିବାର ଉଦ୍ଦେଶ୍ୟ ଥିଲା ଓଡ଼ିଆଭାଷୀ ଓଡ଼ିଆଙ୍କୁ ଏକାଠି କରିବା । ଅନ୍ୟ ଭାଷାରେ ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ଥିଲା ତାଙ୍କର ଚରମ ଲକ୍ଷ୍ୟ । ସେତେବେଳକୁ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇଥିଲେ ଏବଂ ସେ ବର୍ଷ ବଙ୍ଗ ପ୍ରାଦେଶିକ ଅଧିବେଶନରେ ମଧ୍ୟ ଏକ ପ୍ରତିନିଧି ଭାବେ ଅଂଶ ଗ୍ରହଣ କରିଥିଲେ । ଓଡ଼ିଶା ସେତେବେଳେ ବଙ୍ଗ ପ୍ରଦେଶର ଅନ୍ତର୍ଭୁକ୍ତ ଥିବାରୁ କଂଗ୍ରେସର ପ୍ରାଦେଶିକ ସମ୍ମିଳନୀରେ ମଧୁସୂଦନଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । କାରଣ କଂଗ୍ରେସରେ ସେତେବେଳେ ସେ ଜଣେ ମାତ୍ର ଓଡ଼ିଆ ସଭ୍ୟଭୁକ୍ତ ହୋଇଥିଲେ । ଉତ୍କଳର ଗୌରବ ମଧୁସୂଦନ ମନେ ମନେ ସ୍ଥିର କରିଥିଲେ ଯେ ତାଙ୍କର ଚରମ ଲକ୍ଷ୍ୟ ଓଡ଼ିଆମାନଙ୍କ ଦେଶମିଶ୍ରଣ କଂଗ୍ରେସ ଜରିଆରେ କରାଇନେବେ ।

ମଣିଷ ଯାହା ଚିନ୍ତାରେ ଭଗବାନଙ୍କ ଚିନ୍ତାର ଠିକ୍ ସେଇଆ ନୁହଁ ବୋଲି ଗୋଟିଏ ପ୍ରବାଦ ଅଛି ।

ମଧୁସୂଦନ କଳ୍ପନା ସୁଦ୍ଧା କରିନଥିଲେ ଯେ ତାଙ୍କ ଚିନ୍ତାଧାରାକୁ କଂଗ୍ରେସ ନେତୃବର୍ଗ ଯଥାଯଥ ସମ୍ମାନ ଦେବେ ନାହିଁ । ବଙ୍ଗଳାର ପ୍ରାଦେଶିକ ନେତୃବର୍ଗ ଓଡ଼ିଶା ଦେଶ ମିଶ୍ରଣ ପ୍ରସ୍ତାବର ଘୋର ବିରୋଧୀ— ତାହାର ଜ୍ୱଳନ୍ତ ପ୍ରମାଣ ସେ ପାଇଥିଲେ । ପ୍ରଥମତଃ କିଛିବର୍ଷ ଆଗରୁ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ମଧ୍ୟ ଏକ ଆନ୍ଦୋଳନ ହୋଇଥିଲା କେତେଜଣ ବଙ୍ଗାଳୀ ଅଧିନାୟକଙ୍କଦ୍ୱାରା ।

ଯେତେବେଳେ ବଙ୍ଗ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କୁ ଏକାଠି କରାଯାଉ ବୋଲି ମଧୁବାବୁ ପ୍ରସ୍ତାବ କରିଥିଲେ, ଭାବିଥିଲେ ଦେଶର ଚିନ୍ତାଶୀଳ ବ୍ୟକ୍ତିମାନଙ୍କ ଅନୁକୂଳ ମତ ପ୍ରକାଶ ପାଇବ—ବିଶେଷ କରି ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ଭଳି ବିଜ୍ଞ

ବ୍ୟକ୍ତିବୃନ୍ଦ ଅନ୍ତତଃ ତାହାକୁ ସମର୍ଥନ କରିବେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା ସେମାନେ ହିଁ ସେ ପ୍ରସ୍ତାବ ଉପରେ ଘୋର ପ୍ରତିକ୍ରିୟା ପ୍ରକାଶ କରିଥିଲେ । ମଧୁବାବୁ ଅନୁଭବ କରିଥିଲେ ସେ ପ୍ରସ୍ତାବ କୌଣସିମତେ ଅନୁମୋଦିତ ହେବ ନାହିଁ । ସେଥିପାଇଁ ସେମାନେ ଦୃଢପ୍ରତିଜ୍ଞ । ତେଣୁ ଶେଷରେ ଆଉ ଅଧିକ କାଳ ନରହି ମଧୁବାବୁ ବିଷୟ ନିର୍ବାଚନ କମିଟି ବୈଠକ ପରିତ୍ୟାଗ କରି ଆସିବାକୁ ବରଂ ଉଚିତ ମନେ କରିଥିଲେ ।

ସେ ପ୍ରକାର ପରିସ୍ଥିତିର ସମ୍ମୁଖୀନ ହେବାକୁ ହେବ ବୋଲି କଳ୍ପନା ମଧ କରିନଥିଲେ ମଧୁବାବୁ । ତେଣୁ ସୁରେନ୍ଦ୍ରନାଥ ବାନାର୍ଜୀଙ୍କ ସହିତ ବଙ୍ଗ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀର ଆଗାମୀ ବର୍ଷର ଅଧିବେଶନ କଟକଠାରେ ଅନୁଷ୍ଠିତ କରାଇବା ଲାଗି କଥାବାର୍ତ୍ତା କରିଥିଲେ ଏବଂ ସ୍ଥିର ମଧ କରିସାରିଥିଲେ । କିନ୍ତୁ ପରିସ୍ଥିତିର ହଠାତ ପରିବର୍ତ୍ତନ ହେବା ପରେ ମଧୁବାବୁ ସେମାନଙ୍କୁ ଜଣାଇ ଦେଇଥିଲେ ଯେ, ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେବେ ନାହିଁ କି କଟକରେ କଂଗ୍ରେସ ଅଧିବେଶନ କରାଇବା ଦିଗରେ କୌଣସି ସଙ୍ଗଠନ କରିବେ ନାହିଁ ।

କଂଗ୍ରେସ ଯେତେବେଳେ ତାହାଙ୍କ ଆକାଂକ୍ଷିତ କାମନା ପୂର୍ତ୍ତି କରିପାରିବେ ନାହିଁ କିମ୍ବା ସେଇ କାମନାକୁ ରୂପାୟିତ କରିବାରେ ସହାୟକ ମଧ ହେବ ନାହିଁ ବୋଲି ଅନୁଭବ କରିଥିଲେ, ସେତେବେଳଠାରୁ ସେ କଂଗ୍ରେସର ସଭ୍ୟପଦ ତ୍ୟାଗ କରିଥିଲେ ଓ କଂଗ୍ରେସରେ ଯୋଗ ଦେବେ ନାହିଁ ବୋଲି ସ୍ଥିର କରିଥିଲେ ।

ଠିକ୍ ସେତିକିବେଳକୁ ଗଞ୍ଜାମ ସମ୍ମିଳନୀରୁ ଉତ୍କଳ ସମ୍ମିଳନୀ ଗଠନ କରାଯିବାର ପରିକଳ୍ପନା ଓ ଆୟୋଜନ ।

୧୯୦୨ ମସିହାରେ, ଉତ୍କଳ ସମ୍ମିଳନୀ ବିଧିବଦ୍ଧ ଭାବରେ ଗଠିତ ହେବା ପୂର୍ବରୁ ରମ୍ଭା ରାଜବାଟୀଠାରେ ଏକ ସମ୍ମେଳନ ହୋଇଥିଲା ।

ସେଥିରେ ସଭାପତିତ୍ୱ କରିଥିଲେ ମୟୂରଭଞ୍ଜର ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ । ସମ୍ମିଳନୀର ପ୍ରଧାନ ପ୍ରଧାନ ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ଗୋପବନ୍ଧୁ, ମୋକ୍ତାର ରାମଚନ୍ଦ୍ର ଦାସ, ଶ୍ରୀବତ୍ସ ପଣ୍ଡା, "ପ୍ରଜାବନ୍ଧୁ"ର ସମ୍ପାଦକ ଶ୍ରୀ ନୀଳମଣି ବିଦ୍ୟାରତ୍ନ ପ୍ରମୁଖମାନେ ଥିଲେ ପ୍ରଧାନ । ସେହି ସଭାର ନିର୍ଦ୍ଧାରଣ ଅନୁଯାୟୀ ୧୯୦୩ ମସିହା ୧୧/୧୨ ତାରିଖ ଦୁଇଦିନ ଧରି ଗଞ୍ଜାମ ଜାତୀୟ ସମିତିର ଏକ ଦୁଇ ଦିନିଆ ଅଧିବେଶନ ବ୍ରହ୍ମପୁରଠାରେ ଆୟୋଜିତ ହୋଇଥିଲା । ପ୍ରଥମ ଦିନ ସଭାପତିତ୍ୱ କରିଥିଲେ ପାରଳାଖେମୁଣ୍ଡିର ଶ୍ୟାମସୁନ୍ଦର ରାଜଗୁରୁ ଓ ଦ୍ୱିତୀୟ ଦିନ ସ୍ୱୟଂ ମଧୁବାବୁ । ସେହି ସଭାରେ ଗଞ୍ଜାମର ପ୍ରାୟ ପାଞ୍ଚଶହ ପର୍ଯ୍ୟନ୍ତ ପ୍ରତିନିଧି ଯୋଗ ଦେଇଥିଲେ । ତା ସଙ୍ଗେ ସଙ୍ଗେ ଗଞ୍ଜାମ ବାହାରୁ ଯେଉଁମାନେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ଶ୍ରୀ ବିଶ୍ୱନାଥ କର, ଫକୀରମୋହନ ସେନାପତି, ନନ୍ଦକିଶୋର ବଳ, ଗୋପାଳଚନ୍ଦ୍ର ପ୍ରହରାଜ, ବକ୍ସି ଲେକନାଥ ବିଦ୍ୟାଧର ପ୍ରମୁଖମାନେ ।

ସେତେବେଳକୁ ମଧୁବାବୁ କଂଗ୍ରେସ ଅନୁଷ୍ଠାନରୁ ତ ଦୂରକୁ ଆସିଯାଇଥିଲେ, ସେ ସେହିଦିନଠାରୁ ଉତ୍କଳ ସମ୍ମିଳନୀ ସହ ଓତପ୍ରୋତଃ ଭାବେ ଜଡ଼ିତ ହୋଇ ଯାଇଥିଲେ । ପଣ୍ଡିତ ନୀଳକଣ୍ଠ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି—"ହୁଏତ ସେତିକବେଳକୁ ମଧୁବାବୁ ନିଜେ କାର୍ଯ୍ୟ କରିବା ପାଇଁ ପ୍ରେରଣା ପାଇଲେ ଗଞ୍ଜାମରୁ । ସେ ଯାହାହେଉ ୧୯୦୩ ଡ଼ିସମ୍ବର ମାସରେ ମଧୁବାବୁ ସମସ୍ତ କଳ୍ପନା ଯୋଜନା କରି ବୋଧହୁଏ ସମସ୍ତ ଖର୍ଚ୍ଚାଦିଭାର ନିଜେ ନେଇ କଟକକୁ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଡ଼ାକିଲେ । ଅନ୍ୟାନ୍ୟ ଦେଶୋନ୍ନତିର ଯୋଜନା ଏହି ଅନୁଷ୍ଠାନର ମୁଖ୍ୟ ଉଦ୍ଦେଶ୍ୟ ହେଲା ଓଡ଼ିଶା ଦେଶ ମିଶ୍ରଣ" । (୨)

ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ପ୍ରତିନିଧିମାନଙ୍କୁ ଏକାଠି କରିବା ପାଇଁ, ଗୋଟିଏ ମଣ୍ଡପରେ ସମ୍ମିଳିତ କରାଇବା ପାଇଁ ଗଞ୍ଜାମ

(୨) ଆତ୍ମଜୀବନୀ—ପଣ୍ଡିତ ନୀଳକଣ୍ଠ, ପୃଷ୍ଠା-୬୧

ଜାଗରଣ ସହିତ ଓଡ଼ିଶାର ନେତାମାନଙ୍କୁ ଯେଉଁ ପ୍ରେରଣା ଦେଇଥିଲା ତାହାର ପରିଣାମସ୍ୱରୂପ ଥିଲା ଉତ୍କଳ ସମ୍ମିଳନୀ । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ୧୯୦୩ ମସିହା ଡିସେମ୍ବର ୩୧ ତାରିଖ ଓ ୧୯୦୪ ମସିହା ଜାନୁୟାରୀ ୧ ଓ ୨ ତାରିଖରେ କଟକର ଇଦଗା ପଡ଼ିଆରେ ଅନୁଷ୍ଠିତ ହୋଇଥିଲା । ମୟୂରଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ ଏଥିରେ ସଭାପତିତ୍ୱ କରିଥିଲେ ।

ସେତେବେଳେ ପଣ୍ଡିତ ଗୋପବନ୍ଧୁ ଥିଲେ କଲେଜ ଛାତ୍ର । ସେ ଓ ତାଙ୍କର ଜଣେ ଅନ୍ତରଙ୍ଗ ଶ୍ରୀ ବ୍ରଜସୁନ୍ଦର ଦାସ ପ୍ରାୟ ଶହେ ଜଣ ଛାତ୍ରଙ୍କୁ ନେଇ ଏକ ସ୍ୱେଚ୍ଛାସେବକ ବାହିନୀ ଗଠନ କରିଥିଲେ । ଗୋପବନ୍ଧୁଙ୍କ ନେତୃତ୍ୱରେ ଅସଫଳତାର ପ୍ରଶ୍ନ ନଥିଲା । ସ୍ୱେଚ୍ଛାସେବକମାନେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ସେମାନଙ୍କ କାର୍ଯ୍ୟ ଓ ଗୋପବନ୍ଧୁଙ୍କ ନେତୃତ୍ୱ ମଧୁବାବୁଙ୍କୁ ଅଭିଭୂତ କରିପକାଇଥିଲା । ମଧୁବାବୁ ଯଥାର୍ଥରେ ଗୋପବନ୍ଧୁଙ୍କ ଭିତରେ ଲୁଚି ରହିଥିବା ଅଗ୍ନିର ଝଲକ, ସଂଗଠନ ଶକ୍ତି ଓ ହୃଦୟବତ୍ତାକୁ ଲକ୍ଷ୍ୟକରି ପାରିଥିଲେ ।

ଉତ୍କଳ ସମ୍ମିଳନୀର ଅଭ୍ୟୁଦୟର ପୂର୍ବରୁ ୧୮୯୯ ଖ୍ରୀଷ୍ଟାବ୍ଦରେ ଗୋପବନ୍ଧୁ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ସ୍କୁଲ ଜୀବନର ଶେଷ ପରୀକ୍ଷା ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ ଓ କଟକ ରେଭେନ୍ସା କଲେଜରେ ନାମ ଲେଖାଇଥିଲେ । ସେତେବେଳେ ଓଡ଼ିଆ ଭାଷା ପ୍ରତି ସରକାରଙ୍କ ଅବହେଳା ତଥା ଅନ୍ୟାନ୍ୟ ଭାଷାଭାଷୀ ଲୋକଙ୍କ ତାଚ୍ଛଲ୍ୟ ଗୋପବନ୍ଧୁଙ୍କ ମନରେ ଗଭୀର ରେଖାପାତ କରିଥିଲା ।

ସେତେ ସମୟରେ କୌଣସି ଦେଶୀଭାଷା କଲେଜ ଶ୍ରେଣୀମାନଙ୍କରେ ପ୍ରଚଳନ କରାଯାଉ ନଥିଲା । କିନ୍ତୁ ବି. ଏ. ପରୀକ୍ଷା ଦେଲାବେଳେ ବଙ୍ଗଳା ଭାଷାରେ ଗୋଟାଏ ପରୀକ୍ଷା ଦେବାପାଇଁ ସବୁ ଛାତ୍ରଙ୍କୁ ସୁଯୋଗ ଦିଆଯାଉଥିଲା ଓ ସେ ପରୀକ୍ଷାରେ ପାସ୍ କରିବା ପରେ ଗେଜେଟ୍‌ରେ ତାହା ଲିଖିତ କରି ତାହାଙ୍କ ନାମକୁ ସମ୍ମାନିତ କରାଯାଉଥିଲା । କିନ୍ତୁ ସେହିପରି

ବ୍ୟବସ୍ଥା ଓଡ଼ିଆ ଭାଷାପାଇଁ ନଥିଲା । ବିଶେଷତଃ ବଙ୍ଗଳା ଭାଷାଭାଷୀ ନେତୃବର୍ଗ ଯେଉଁମାନେ ଦିନେ "ଓଡ଼ିଆ ଏକଟା ସ୍ୱତନ୍ତ୍ର ଭାଷାନୟ" ବୋଲି ଅତୀତରେ ଆନ୍ଦୋଳନ କରିଥିଲେ ସେଇମାନଙ୍କ ବଂଶଧରମାନେ ଓଡ଼ିଆଙ୍କ ପାଇଁ ଏକ ସ୍ୱତନ୍ତ୍ର ପରୀକ୍ଷା ନଦେବାଲାଗି ସମସ୍ତ ଚେଷ୍ଟା ବରଂ ଆନ୍ଦୋଳନ ବି କରୁଥିଲେ ଓ ଯେତେବେଳେ ସେ ପ୍ରଶ୍ନ କୌଣସି କାରଣରୁ ଉଠେ ତାହାକୁ ଚପାଇ ରଖିବା ଲାଗି ବରାବର ଉଦ୍ୟମ କରି ସଫଳ ହୋଇଥିଲେ । ସେଥିପାଇଁ ଓଡିଶାରେ ମଧ୍ୟ ଯଥାବିଧି ଆନ୍ଦୋଳନ କିମ୍ବା ଦାବୀ ଉପସ୍ଥାପନ ହୋଇପାରୁ ନଥିଲା ।

ସେ ପ୍ରକାର ପରିସ୍ଥିତିର ମୁକାବିଲା କରିବା ପାଇଁ ଗୋପବନ୍ଧୁ ୧୮୯୯ରେ କିଛି କେତେଜଣ ଦେଶସେବା ମନୋବୃତ୍ତି ଥିବା ଯୁବକଙ୍କୁ ନେଇ ଗଠନ କରିଥିଲେ "କର୍ତ୍ତବ୍ୟବୋଧିନୀ ସମିତି" । ଓଡିଆ ଭାଷାକୁ କଲିକତା ବିଶ୍ୱବିଦ୍ୟାଳୟ ଗ୍ରହଣ କରିବା ଲାଗି ଏ ସମିତି ବରାବର ଚେଷ୍ଟା ଆରମ୍ଭ କରିଥିଲା ଓ ପରିଶେଷରେ ୧୯୦୨ ମସିହାରେ ବଙ୍ଗର ଲାଟ କଲିକତା ବିଶ୍ୱବିଦ୍ୟାଳୟ ଡାଇରେକ୍ଟର ହିସାବରେ ବଙ୍ଗାଳୀ ଉଚ୍ଚ କର୍ମକର୍ତ୍ତାଙ୍କର ପ୍ରବଳ ବିରୋଧ ସତ୍ତ୍ୱେ ଓଡ଼ିଆଙ୍କ ସେ ଦାବୀକୁ ଗ୍ରହଣ କରି ନେଇଥିଲେ । ତାହାଥିଲା ଗୋପବନ୍ଧୁଙ୍କ ନେତୃତ୍ୱରେ କର୍ତ୍ତବ୍ୟବୋଧିନ ସମିତିର ଏକ ପ୍ରଧାନ ସାଫଲ୍ୟ ।

ତେବେ ସେ ସମିତିର ପ୍ରଧାନ ଉଦ୍ଦେଶ୍ୟ ଥିଲା ଜାତୀୟ ସେବା କରିବା ଜନମାନସରେ ଜାତୀୟ ମମତା ଜାଗ୍ରତ କରାଇବା । ସେଇ ସମିତିରେ ଗୋପବନ୍ଧୁଙ୍କ ବ୍ୟତୀତ ଆଉ ଯେଉଁମାନେ ସକ୍ରିୟଭାବରେ ଅଂଶ ଗ୍ରହଣ କରୁଥିଲେ ସେମାନଙ୍କ ମଧ୍ୟରେ ପଣ୍ଡିତ ହରିହର ଓ ବ୍ରଜସୁନ୍ଦର ଦାସ ଥିଲେ ଅନ୍ୟତମ ।

କଲେଜରେ ଯୋଗଦେବାର ଦୁଇବର୍ଷ ପରେ ୧୯୦୦ ମସିହାରେ ଯେତେବେଳେ ଗୋପବନ୍ଧୁ ରେଭେନ୍‌ସା କଲେଜରୁ ଦ୍ୱିତୀୟ ଶ୍ରେଣୀରେ ଏଫ୍. ଏ. ପାସ୍ କରିଥିଲେ ସେଇ ବର୍ଷ ତାଙ୍କର ଗୋଟିଏ ପୁତ୍ର ସନ୍ତାନର

ମୃତ୍ୟୁ ହୋଇଥିଲା । ୨୪ ବର୍ଷ ବୟସ୍କ ଯୁବକ ଗୋପବନ୍ଧୁ ସେଥିରେ ସାମାନ୍ୟ ବିଚଳିତ ହୋଇପଡ଼ିଥିଲେ ଓ ତା ପରେ ପରେ ଆଉ ଅଧିକ ଅଧ୍ୟୟନ ନକରି କଲେଜ ପାଠ ସେଇଠି ସାଙ୍ଗ କରିବେ ବୋଲି ମଧ୍ୟ ମନସ୍ଥ କରିଥିଲେ । କିନ୍ତୁ ସେ ପରିଚ୍ଛେଦ ସେତିକିରେ ସମାପ୍ତ ହେବାକୁ ଦିଆଯାଇ ନଥିଲା । ଗୋପବନ୍ଧୁଙ୍କ ଜ୍ୟେଷ୍ଠଭ୍ରାତା ନାରାୟଣ ଦାସ, ବନ୍ଧୁ ଗୋପୀନାଥ ଦାସ, ହରିହର ମହାପାତ୍ର, ଜଗବନ୍ଧୁ ସିଂହ ଓ ଅନ୍ୟାନ୍ୟମାନଙ୍କ ଏକଟିକିଆ ବାଧ୍ୟବାଧକତା ଯୋଗୁଁ ସେ ବି. ଏ. ଶ୍ରେଣୀରେ ନାମ ଲେଖାଇଥିଲେ ।

ବି. ଏ. ଶ୍ରେଣୀରେ ଯୋଗ ଦେଇଥିଲେ ମଧ୍ୟ ଜଣେ ଛାତ୍ର ଅଧ୍ୟୟନ ଦିଗରେ ଯେତିକି ମନଯୋଗ ଦେବା କଥା ସେତିକି ସେ ବାସ୍ତବିକ୍ ଦେଇ ପାରିନଥିଲେ । ତା ଅପେକ୍ଷା ଅଧିକ ଗୁରୁତ୍ୱ ଦେଇଥିଲେ ସାମାଜିକ ସେବା କାର୍ଯ୍ୟକୁ ଓ ଜାତୀୟ କାର୍ଯ୍ୟକୁ ।

ଉତ୍କଳ ସମ୍ମିଳନୀ ଆରମ୍ଭ ହେବା ଦିନଠାରୁ ତାହାର ସଙ୍ଗଠନ ଦିଗରେ ଗୋପବନ୍ଧୁ ନିଜକୁ ସାମିଲ କରିନେଇଥିଲେ କୁଳବୃଦ୍ଧ ମଧୁସୂଦନଙ୍କ ସହ ହାତ ମିଳାଇ । ବୋଧହୁଏ ତାହାହିଁ ଥିଲା ଅନ୍ୟତମ କାରଣ ଯେଉଁଥିପାଇଁ ଗୋପବନ୍ଧୁ ପ୍ରଥମଥର ବି. ଏ. ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥିଲେ ।

କଥାରେ ଅଛି ଯେତେବେଳେ ଦୁଃଖ ଆସେ ସେ କେବେହେଁ ଏକାକୀ ଆସେ ନାହିଁ । ସାଙ୍ଗସାଥୀମାନଙ୍କ ଗହଣରେ ପହଞ୍ଚି ଆର କରିଆସେ । ଯେଉଁଦିନ ଗୋପବନ୍ଧୁ ସ୍ନାତକ ପରୀକ୍ଷାରେ ଫେଲ୍ ହେଲେ ବୋଲି ସମ୍ବାଦ ପହଞ୍ଚିଥିଲା ସେଇଦିନ ଆଉ ଏକ ମର୍ମାନ୍ତିକ ଦାରୁଣ ଦୁଃସମ୍ବାଦ ପହଞ୍ଚିଲା ଯେ ତାଙ୍କର ଏକମାତ୍ର ପୁତ୍ରର ମୃତ୍ୟୁ ହୋଇଛି ।

ସେଥିରେ ସେ ଭାଙ୍ଗି ପଡ଼ିଥିଲେ । କିନ୍ତୁ ସେ ଯନ୍ତ୍ରଣା ଥିଲା ସାମୟିକ । ତେବେ ସେଥିରେ ଲକ୍ଷ୍ୟପଥରୁ ବିଚ୍ୟୁତି ଘଟିନଥିଲା ତାଙ୍କର ।

ତାହାହିଁ ତାଙ୍କ ଜୀବନର ବିଶେଷତ୍ୱ—ତାହାହିଁ ସାଧାରଣ ମାନବ ଓ ମହାମାନବ ମଧ୍ୟରେ ପାର୍ଥକ୍ୟ । ଜୀବନରେ ଅନେକ ବାଧା ଆସିଥିଲା, ବନ୍ଧନ ଆସିଥିଲା, ଦୁର୍ମଦ ଝଡ଼ଭଳି ଅନେକ ବିପଦ ସମ୍ମୁଖରେ ଉପସ୍ଥିତ ହୋଇଥିଲା, ପାରିବାରିକ ଅଶାନ୍ତି ଥିଲା କିନ୍ତୁ କୌଣସିଥିରେ ମଧ୍ୟ ସେ ସାମାନ୍ୟତମ ବିଚଳିତ ହୋଇ ନଥିଲେ । ତାଙ୍କ ଲକ୍ଷ୍ୟପଥ ନିର୍ଦ୍ଦିଷ୍ଟ ଥିଲା ଧ୍ରୁବତାରା ଭଳି ।

ପୁଣି ଦ୍ୱିତୀୟଥର ପାଇଁ ବି. ଏ. ପରୀକ୍ଷା ଦେଇଥିଲେ ଓ ପାସ୍ ମଧ୍ୟ କରିଥିଲେ ୧୯୦୩ ମସିହାରେ । ବି. ଏ. ପାସ୍ କରିସାରିବା ପରେ ଗୋପବନ୍ଧୁ ପୁରୀର ମୋକ୍ତାର ରାମଚନ୍ଦ୍ର ଦାସଙ୍କ ନିକଟକୁ ଯାଇଥିଲେ ସେ ସମ୍ବାଦ ଦେବାପାଇଁ ଶ୍ରୀ ବ୍ରଜସୁନ୍ଦର ଦାସ, ଗୋପୀନାଥ ଦାସ ଓ ବୈଦ୍ୟନାଥ ମିଶ୍ରଙ୍କ ସହିତ । ରାମଚନ୍ଦ୍ର ସମସ୍ତଙ୍କୁ ହସି ହସି ପଚାରିଥିଲେ ତା ପରେ ପ୍ରତ୍ୟେକେ କଣ ସବୁ କରିବ । ଉତ୍ତରରେ ବୈଦ୍ୟନାଥ ଓ ଗୋପୀନାଥ କହିଥିଲେ ଯେ ସେମାନେ ସରକାରୀ ଚାକିରୀ କରିବାକୁ ଇଚ୍ଛୁକ କାରଣ ତାଙ୍କ ମୁରବିମାନେ ସେଇ ଇଚ୍ଛା ପୋଷଣ କରିଥିଲେ । କିନ୍ତୁ ଗୋପବନ୍ଧୁଙ୍କ ପାଳି ଯେତେବେଳେ ପଡ଼ିଥିଲା ସେ ଆଉ ଭାଷାରେ କୌଣସି ଉତ୍ତର ଦେଇ ପାରିନଥିଲେ । କୌଣସି ବାଧାବନ୍ଧନ ନମାନି ଚକ୍ଷୁରୁ ନିର୍ଗତ ହୋଇଥିଲା ତତଲା ଲୁହର ଧାର । ସେଇ ଉତ୍ତର ହିଁ ମୋକ୍ତାର ରାମଚନ୍ଦ୍ର ଦାସ ଗ୍ରହଣ କରିଥିଲେ ଗୋପବନ୍ଧୁଙ୍କଠାରୁ । ସେଇ ଲୁହଧାର ହିଁ ପ୍ରକାଶ କରିଥିଲା ତାଙ୍କ ମନର କଥା । ରାମଚନ୍ଦ୍ର ଆନନ୍ଦରେ ଅଧୀର ହୋଇ ପଡ଼ିଥିଲେ । ଗୋପବନ୍ଧୁଙ୍କୁ କୁଣ୍ଢାଇ ପକାଇ କହିଥିଲେ ସେ ହିଁ ଠିକ୍ ପନ୍ଥା ଧରିଛନ୍ତି । ଦେଶର ସେବା କରିବାକୁ ତାହାଙ୍କୁ ତା ପରେ ଓକିଲାତି ପଢ଼ିବାକୁ ହେବ । ତା ପରେ ହିଁ ଦେଶ ଓ ଦଶର ସେବାରେ ନିୟୋଜିତ କରିପାରିବେ ସମ୍ପୂର୍ଣ୍ଣଭାବେ ବରଂ ଉଚିତ ଭାବେ ।

ପଣ୍ଡିତ ଗୋପବନ୍ଧୁଙ୍କ ସ୍ୱଭାବ ତଥା ତାଙ୍କର ଧମନୀର ରକ୍ତରେ ସେବାଭାବ ଏବଂ ସଙ୍ଗଠନ ଭାବ ଏପରି ଭାବରେ ଆସ୍ଥାନ ଜମେଇ ବସିଥିଲା ଯେ ସେ କେତେବେଳେ ହେଲେ ସ୍ଥିର ହୋଇ ବସି ପାରୁନଥିଲେ । ବି. ଏ.

ପରୀକ୍ଷା ଦେଇ ପୁରୀକୁ ଫେରିବା ସଙ୍ଗେ ସଙ୍ଗେ ଏକ ସାହିତ୍ୟିକ ଅନୁଷ୍ଠାନ ଆରମ୍ଭ କରିଥିଲେ । ତାର ନାମକରଣ କରିଥିଲେ 'ବିଶ୍ୱବିଦ୍ୟାଳୟ' । ସ୍ୱୟଂ ଗୋପବନ୍ଧୁ ଥିଲେ ତାର ପରିଗ୍ରାଳକ । ସେହି ସଭାରେ ବିଭିନ୍ନ ବ୍ୟକ୍ତି ତଥା ଇଚ୍ଛୁକ ସାହିତ୍ୟିକ ପ୍ରେମୀ କବିତା, ଗଳ୍ପ, ପ୍ରବଂଧ ଇତ୍ୟାଦି ଆଣି ପାଠ କରୁଥିଲେ ଓ ସେଗୁଡିକ ଉପରେ ଆଲୋଚନା କରାଯାଉଥିଲା । କେବଳ ସେତିକି ନୁହ, ବିଭିନ୍ନ ସମ୍ବାଦପତ୍ର ଅଣାଯାଇ ପାଠ କରାଯାଉଥିଲା ଓ ଦେଶ ବିଦେଶରେ ବିଭିନ୍ନ ସମସ୍ୟାବଳୀ ଉପରେ ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନାମାନ ହେଉଥିଲା । ସେହି ସଭା ଆଲୋଚନା ଚକ୍ରଗୁଡ଼ିକରେ ନିୟମିତ ଭାବେ ମୋକ୍ତ୍ୟାର ରାମଚନ୍ଦ୍ର ଦାସ ଯୋଗ ଦେଇଥିଲେ । ସଭାଗୁଡିକ ସଂସ୍କୃତ ଟୋଲରେ ପ୍ରତିଷ୍ଠିତ ଲିଟରାରୀ କ୍ଲବ ଓ ଲାଇବ୍ରେରୀରେ ଅନେକାଂଶରେ ଅନୁଷ୍ଠିତ ହେଉଥିଲା । ଆଉ ଯେଉଁମାନେ ସେ ସଭାଗୁଡିକରେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଥିଲେ ତତ୍କାଳୀନ ଓଡ଼ିଶା କମିଶନର ତଥା ଜଣେ ବିଶିଷ୍ଟ ସାହିତ୍ୟିକ ଶ୍ରୀ ରମେଶଚନ୍ଦ୍ର ଦତ୍ତ, ପୁରୀର ସିନିୟର ମାଜିଷ୍ଟ୍ରେଟ ବାୟୁନାନନ୍ଦ ଭଟ୍ଟାଚାର୍ଯ୍ୟ ଓ ଅନ୍ୟମାନେ । ସେମାନେ ବିଭିନ୍ନ ଆଲୋଚନାରେ ସକ୍ରିୟ ଭାବେ ଅଂଶ ଗ୍ରହଣ କରିଥିଲେ । ପଣ୍ଡିତ ବାସୁଦେବ ରଥ ତାଙ୍କ ବନ୍ଧୁ ଗୋପବନ୍ଧୁଙ୍କ ସମ୍ପର୍କରେ ମତ ଦେବାକୁ ଯାଇ ସେତେବେଳର କଥା ମନେ ପକାଇ ଲେଖିଛନ୍ତି "ଥରେ କୌଣସି ବିଷୟରେ ଗୋପବନ୍ଧୁଙ୍କର କମିଶନର ରମେଶଚନ୍ଦ୍ର ଦତ୍ତଙ୍କ ସହିତ କେତେକ ସମୟ ଧରି ଯୁକ୍ତିତର୍କ ଚାଲିଥିବା କଥା ମୋର ସ୍ପଷ୍ଟ ମନେଅଛି । ବିଭିନ୍ନ ଆଲୋଚନା ସଭାରେ ଗୋପବନ୍ଧୁଙ୍କ ଲିଖିତ ପ୍ରବନ୍ଧ ସମସ୍ତଙ୍କଦ୍ୱାରା ବିଶେଷ ଆଦୃତ ହୋଇଥିଲା ।'

ସେଇମିତି ଆଉ ଗୋଟିଏ ଅନୁଷ୍ଠାନ ଗଠିତ ହୋଇଥିଲା କଟକରେ ୧୯୦୪-୧୯୦୫ ମସିହାରେ । ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିବା ଛାତ୍ରମାନଙ୍କୁ ନେଇ ସେ ଅନୁଷ୍ଠାନର ନାମଥିଲା "ୟଙ୍ଗ୍ ଓଡିଶା ଏସୋସିଏସନ" । ଏହି ତରୁଣ ଉତ୍କଳ ସଂଘର ସ୍ଥାୟୀ ସଭାପତି ଥିଲେ ରେଭେନ୍‌ସା କଲେଜର ଅଧକ୍ଷ ଓ ତାର ସ୍ଥାୟୀ ସାଧାରଣ ସମ୍ପାଦକ ଥିଲେ ପଣ୍ଡିତ ଗୋପବନ୍ଧୁ ଦାସ । ସେହି ସଂଘର ଅନେକଗୁଡ଼ିଏ ବିଭାଗ ଥିଲା ।

ସେଗୁଡିକ ମଧ୍ୟରେ ଥିଲା ସାହିତ୍ୟ, ଶାରୀରିକ ଶିକ୍ଷା, ସମାଜ ସେବା ଇତ୍ୟାଦି । ସେହି ବିଭିନ୍ନ ବିଭାଗଗୁଡିକର କାର୍ଯ୍ୟ ପରିଚାଳନା କରିବା ପାଇଁ ଦାୟିତ୍ୱ ନେଇଥିଲେ ଗୋପବନ୍ଧୁଙ୍କ ସଖାଗଣ—ନୀଳକଣ୍ଠ, ହରିହର, ଗୋଦାବରୀଶ, କୃପାସିନ୍ଧୁ ପ୍ରମୁଖ ।

କେତେ ନିର୍ଦ୍ଦିଷ୍ଟ ଛାତ୍ର/ଯୁବକଙ୍କୁ ନେଇ ସେଇ ସଂଘର ଅନେକଗୁଡ଼ିଏ ଗୋପନ ବୈଠକ ଅନୁଷ୍ଠିତ ହେଉଥିଲା ଯାହାର ପରିଚାଳନା ଭାର ନିଜେ ଗୋପବନ୍ଧୁ ଗ୍ରହଣ କରିଥିଲେ । ତାହାଙ୍କୁ ସହଯୋଗ କରିଥିଲେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ଓ ପଣ୍ଡିତ ନୀଳକଣ୍ଠ । ସେଇ ବୈଠକଗୁଡ଼ିକରେ ଆଲୋଚନାର ବିଷୟବସ୍ତୁ ଥିଲା ଫରାସୀ ରାଷ୍ଟ୍ର ବିପ୍ଳବର କାହାଣୀ, ଇଟାଲୀର ସ୍ୱାଧୀନତା ଆନ୍ଦୋଳନର ଇତିହାସ ଇତ୍ୟାଦି ଏବଂ ଗାରିବାଲ୍‌ଡିଙ୍କ ପରି ମହାମାନବଙ୍କ ଜୀବନ କାହାଣୀ । ସେହି ଗୁପ୍ତ ବୈଠକଗୁଡ଼ିକର ସମ୍ପର୍କ ବଙ୍ଗଳାର ସନ୍ତ୍ରାସବାଦୀ ଦଳଙ୍କ ସହିତ ଥିଲା । ସେତେବେଳେ ବଙ୍ଗଳାରେ ଗୋଟିଏ ଉଗ୍ର ଜାତୀୟ ଭାବାପନ୍ନ ଦଳ ଗୋପନୀୟଭାବେ ସଙ୍ଗଠିତ ହୋଇଥିଲା । ସଭ୍ୟମାନେ ଗୁପ୍ତରେ ବୋମା ମଧ୍ୟ ପ୍ରସ୍ତୁତ କରୁଥିଲେ ଏବଂ ବିଦେଶୀ ଶାସକମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରିବାକୁ ପଶ୍ଚାତ୍‌ପଦ ହେଉ ନଥିଲେ । ସେମାନଙ୍କର ଚରମ ଲକ୍ଷ୍ୟଥିଲା କେବେବେଳେ କୌଶଳେ ବିଦେଶୀ ଶାସନକୁ ଏ ଦେଶରୁ ସମୂଳେ ଉତ୍ପାଟନ କରିବ । ବଙ୍ଗଳାରେ ସେମାନେ ଏକପ୍ରକାର ଆତଙ୍କ ସୃଷ୍ଟି କରିଥିଲେ ସେତେବେଳେ । ଓଡ଼ିଶାରେ ଏ ସଙ୍ଗଠନ କରିବା ମୂଳରେ ଥିଲେ ସ୍ୱାଧୀନଚେତା ବିଶ୍ୱନାଥ କର । ସରକାର ଏ ତରୁଣ ସଙ୍ଗଠନକୁ ସବୁବେଳେ ବିଷ ଦୃଷ୍ଟିରେ ଦେଖୁଥିଲେ ଏବଂ ମନେ କରୁଥିଲେ ଗୋପବନ୍ଧୁ ଓ ବିଶ୍ୱନାଥଙ୍କ ପ୍ରେରଣାରେ ଏ ଦେଶରେ ଛାତ୍ରମାନେ ବିପଥଗାମୀ ହେବାର ସୁଯୋଗ ପାଉଥିଲେ । ତେବେ ବିଭିନ୍ନ ସମୟରେ ଜାତୀୟ ସେବା କାର୍ଯ୍ୟରେ ସମ୍ପୂର୍ଣ୍ଣ ଅନୁଷ୍ଠାନ ନିୟୋଜିତ ହୋଇଥିଲା—ବିଶେଷ କରି ୧୯୦୭ ମସିହାରେ କେନ୍ଦ୍ରାପଡ଼ା ଓ ଯାଜପୁରର ବନ୍ୟା ସମୟରେ ।

କଲେଜରେ କେବଳ କାହିଁକି ସ୍କୁଲରେ ଅଧ୍ୟୟନ କରିବା ସମୟରେ ମଧ୍ୟ ଗୋପବନ୍ଧୁ ଗ୍ରୀଷ୍ମ ଅବକାଶରେ ନିଜ ଗ୍ରାମ ସୁଆଣ୍ଡୋ ଯାଉଥିଲେ ।

ପ୍ରତିବର୍ଷ ଜ୍ୟେଷ୍ଠ ପୂର୍ଣ୍ଣିମାର ସାତଦିନ ପୂର୍ବରୁ ତାଙ୍କ ଗାଁ ମୁଣ୍ଡରେ, ଭାର୍ଗବୀ ନଈକୂଳରେ ଅବସ୍ଥିତ ଠାକୁରାଣୀ ମନ୍ଦିରରେ ସପ୍ତାଙ୍ଗ ଭାଗବତ ପାଠ ହୋଇଥାଏ । ପ୍ରାୟ ପ୍ରତ୍ୟେକ ବର୍ଷ ଗୋପବନ୍ଧୁ ସେ ଭାଗବତ ପାଠରେ ଯୋଗ ଦେଇଥାନ୍ତି । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ତାହାର ଉଦ୍‌ଯାପନ ଦିବସ । ସେହି ଦିବସ ଉପଲକ୍ଷେ ଆଖପାଖ ଗାଁର ଲୋକେ ନିମନ୍ତ୍ରିତ ହେଉଥିଲେ ।

ଗୋଟିଏ ସ୍ମରଣୀୟ ଘଟଣା । ସେ ଥିଲା ୧୯୦୫ ମସିହା ।

ସେଦିନ ସପ୍ତାଙ୍ଗ ଭାଗବତ ପାଠର ଶେଷ ଦିବସ । ଗୋପବନ୍ଧୁ ମଠାଲୁଗା ପରିଧାନ କରି ଶୁଦ୍ଧମୂର୍ତ୍ତିଭାବେ ଉତ୍ସବର ଆୟୋଜନରେ ଲାଗି ପଡ଼ିଥିଲେ । ସେତିକିବେଳେ ଯାଇ ସେଠାରେ ପହଞ୍ଚିଥିଲେ ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ହରିହର ଓ ଚୈତ୍ରିକ ଅନନ୍ତ ମିଶ୍ର । ସେମାନେ ସମସ୍ତେ ସୁଆଣ୍ଡୋରେ ଗୋପବନ୍ଧୁଙ୍କ ଘରେ ପହଞ୍ଚିଲାବେଳକୁ ପ୍ରାୟ ନଅଟା । ସେଇଠି ସେମାନେ ଖବର ପାଇଲେ ଯେ ସେ ସପ୍ତାଙ୍ଗ ପାଠରେ ବସିଛନ୍ତି । ସେ ସମ୍ବାଦ ପାଇ ସେମାନେ ଯାଇ ଠାକୁରାଣୀ ମନ୍ଦିର ନିକଟରେ ହାଜର । ଦେଖିଲେ ଗୋପବନ୍ଧୁ ନିଜେ ଭାଗବତ ପାଠ କରୁଥିଲେ । ସକାଳର ବାଲଭୋଗ ଚୂଡ଼ାଘସା ଥିଲା । ସେ ପ୍ରସାଦ ସେମାନେ ପାଇଥିଲେ ସ୍ନାନାଦିକର୍ମ ଶେଷ କରିବା ପରେ ।

ଭାଗବତ ପାଠ ଶେଷ ହେଲାବେଳକୁ ପ୍ରାୟ ଅପରାହ୍ନ ହୋଇଯାଇଥିଲା । ସେତେବେଳକୁ ସେବକ ଅନୁଆ ଭାତ, ଡାଲି ଓ ତରକାରି ପାକକରି ରଖି ଦେଇଥିଲେ । ସେଗୁଡ଼ିକ ସବୁ ଭାଗବତଙ୍କୁ ଭୋଗସ୍ୱରୂପ ଦିଆଯାଇଥିଲା । ତା ପରେ ସମସ୍ତେ କଦଳୀପତ୍ର ପକାଇ ବସିଥିଲେ ଏକୋଡ଼ି ଯେତେ ଜଣ ସେଇଠି ଉପସ୍ଥିତ ଥିଲେ । ସେବକ ସେଇ ବେଢ଼ାରୁ ଆଞ୍ଜୁଳା ଆଞ୍ଜୁଳା କରି ଭାତ ସମସ୍ତଙ୍କ ପତ୍ରରେ ବାଢ଼ି ଦେଇଥିଲା । କେହି ଚଳୁ ନକରି ସେ ପ୍ରସାଦ ସେବା କରିଥିଲେ । ନୈଷ୍ଠିକ ରକ୍ଷଣଶୀଳ ପରିବାର ସମ୍ଭୂତ ନୀଳକଣ୍ଠଙ୍କୁ ତାହା ଖୁବ୍ ଅଡୁଆ ଅଡୁଆ ମନେ ହୋଇଥିଲା ।

ଗୋପବନ୍ଧୁଙ୍କ ଜୀବନରେ ଜଗନ୍ନାଥ ଦାସଙ୍କ ଭାଗବତ ଏକ ସ୍ଥାୟୀ ପ୍ରଭାବ ପକାଇଥିଲା ବୋଲି ଅନେକେ ଯେଉଁ ମତ ଦେଇଥାନ୍ତି ତାହା ସମ୍ପୂର୍ଣ୍ଣ

ମିଥ୍ୟା ହୋଇ ନପାରେ । ତାଙ୍କଘରେ ପ୍ରତିଦିନ ଭାଗବତ ପାଠ ହେଉଥିଲା ଓ କଶୋର ବୟସରେ ମଧ୍ୟ ସେ ଭାଗବତ ପାଠ କରୁଥିଲେ । ବାରମ୍ବାର ଭାଗବତ ପାଠ କରିବା ଫଳରେ ତାହାର ଅନେକ ଅଂଶ ଗୋପବନ୍ଧୁଙ୍କ ମୁଖସ୍ଥ ହୋଇଯାଇଥିଲା ଏବଂ ଏକାକୀ ଭ୍ରମଣ କରୁଥିବା ସମୟରେ ଭାଗବତରୁ ପଦେ ପଦେ ଗାଇ ଦେଉଥିଲେ । ଜଗନ୍ନାଥଙ୍କ ଭାଗବତର ଏକାଦଶସ୍କନ୍ଧ ତାଙ୍କର ପ୍ରିୟଥିଲା । ଅଧ୍ୟାପକ ସୁଦର୍ଶନ ଆଚାର୍ଯ୍ୟଙ୍କ ଭାଷାରେ "ଭାଗବତ ପାଠ କରିବାରେ ଯାହାର ଏତେ ନିଷ୍ଠା ଓ ଆଗ୍ରହ ସେ ଯେ ତାର ଆଦର୍ଶରେ ନିଜକୁ ଗଠନ କରିବା ନିମନ୍ତେ ଚେଷ୍ଟା କରିଥିବେ ଏଥିରେ ସନ୍ଦେହ କଣ ଅଛି । ଭାଗବତର ସରଳ ଓ ସର୍ବଜନବୋଧ ଭାଷା ଏବଂ ପ୍ରାଞ୍ଜଳ ଅଭିବ୍ୟକ୍ତି ଗୋପବନ୍ଧୁଙ୍କ ରଚନାରେ ସର୍ବତ୍ର ପରିଦୃଷ୍ଟ ।"

ସେଇ ଦିନ ରାତି । ଗୋପବନ୍ଧୁ ତାଙ୍କ ଅନୁଚରମାନଙ୍କ ଜୀବନର ମୋଡ଼ ବଦଳାଇବା ଭଳି ଏକ ରୋମାଞ୍ଚକର ଘଟଣା । "ସେଦିନ ନଈବନ୍ଧ ଉପରେ ବରଗଛ ମୂଳେ ତଳ ଚନ୍ଦ୍ରକାନ୍ତ ଘରେ ଗୋପବନ୍ଧୁ ଦାସଙ୍କୁ ଦେଖ ଆମେ ଗୁରୁଜଣପାକ ଖଣ୍ଡିଏ ଦୋପଟା ଗୁଞ୍ଜ କରି ସନ୍ଧ୍ୟାପରେ ସେଇ ବରଗଛ ମୂଳେ ବସିଲୁ । ଆରପାଖେ ବାଲୁଆସବୁ କାଳକରି ଦରପୋଡ଼ା ମଡ଼ାସବୁ ଓଟାରୁଥାନ୍ତି । ମୁର୍ଦାରଙ୍କ କୋକେଇ (Coffin)ର କନାକତରା ସବୁ ପଡ଼ିବାର ଦିଶୁଥାଏ । ଆମର ଗପ ଚାଲିଲା । ଗୋପବନ୍ଧୁ ଦାସଙ୍କ ପରି ଗଳ୍ପ କହି ଭୁଲାଇବା ଲୋକ ଖୁବ୍ କମ୍ ଅଛନ୍ତି । ବିଶେଷରେ ଆମେ ପିଲା । ସେ ରାତି ଗଳ୍ପର ବିଷୟସବୁ ପ୍ରାଣରେ ଆଙ୍କି ହୋଇଗଲା । ତନ୍ଦ୍ରା ଛୁଟିଗଲା । ରାତି ବି ସକାଳ ହୋଇ ଆସିଲା । ଆମେ ତନ୍ମୟ । ଶେଷକୁ ଠିକ୍ ହେଲା ଆମେ ପାଠପଢ଼ି ସରକାରୀ ଚାକିରୀ କରିବା ନାହିଁ । ଦେଶପାଇଁ କଷ୍ଟ କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଇଁ ତାଠାରୁ ଉନ୍ନତ ଦେଖି ମରିବା ।" (୩)

ସେ ସଙ୍କଳ୍ପର ଖିଲାପ କେବେହେଁ ହୋଇନାହିଁ ଗୋପବନ୍ଧୁଙ୍କ ଜୀବନରେ ।

(୩) ଆତ୍ମଜୀବନୀ ମାଳକଣ୍ଠ, ପୃଷ୍ଠା ୩୫

ଛାତ୍ରଜୀବନରେ ଅଧ୍ୟୟନ, ଜାତୀୟ ସେବା ଓ ସେଇ ଉଦ୍ଦେଶ୍ୟରେ ଗଠିତ ଅନୁଷ୍ଠାନମାନଙ୍କର ପରିଚାଳନା ବାଦ୍ ଗୋପବନ୍ଧୁ ଲେଖାଲେଖି ମଧ୍ୟ କରୁଥିଲେ । ସାହିତ୍ୟ ସାହିତ୍ୟିକ ଅନ୍ତରର ପରିପ୍ରକାଶ ମାତ୍ର । ତେଣୁ ସେଥିପାଇଁ ସ୍ଥାନ କାଳ ପାତ୍ରର ବାଛ ବିଚାର ନାହିଁ । ଅନ୍ତର ଯେତେ-ବେଳେ ଉଦ୍‌ବେଳିତ ହୋଇ ଉଠେ ସେ ଚାହେଁ ଯେ କୌଣସିମତେ ତାହାର ପରିପ୍ରକାଶ ହେଉ । ରେଭେନ୍‌ସା କଲେଜରେ ଅଧ୍ୟୟନ କରୁଥିବା ସମୟରେ ରାଧାନାଥଙ୍କ କାବ୍ୟ "ମହାଯାତ୍ରା"ର ଅନୁକରଣରେ ସେ ମଧ୍ୟ ଗୋଟିଏ କାବ୍ୟ ରଚନା କରିଥିଲେ । ତାହା ଥିଲା "କଳ୍ପଲତା" । ପରେ କାବ୍ୟଟିର ପାଣ୍ଡୁଲିପି ସେ କବିବରଙ୍କୁ ଦେଇଥିଲେ ପାଠ କରିବା ଲାଗି । ରାଧାନାଥ ତାହା ପାଠକରି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ତାହା ନିଜେ ନେଇ ଆସି କବିଙ୍କୁ ଫେରସ୍ତ ଦେବାବେଳେ ତାଙ୍କ ପ୍ରତି ଗଭୀର ଅନୁରାଗ ପ୍ରକାଶ କରିବା ସଙ୍ଗେ ସଙ୍ଗେ ବିଶେଷ ଭାବେ ଉତ୍ସାହିତ ମଧ୍ୟ କରିଥିଲେ । କିନ୍ତୁ ତା ପରେ ଗୋପବନ୍ଧୁ ଗ୍ରୀଷ୍ମାବକାଶରେ ନିଜ ଗାଁକୁ ଫେରିବାବେଳେ ସେହି ପାଣ୍ଡୁଲିପିଟି ବାକ୍‌ସରେ ରଖିଥିଲେ ତାହା ଖୋର୍ଦ୍ଧା ରେଳ ଷ୍ଟେସନରେ ଚୋରି ହୋଇଯାଇଥିଲା । ଗୋପବନ୍ଧୁ ସେଥିରେ ଖୁବ୍ ବ୍ୟସ୍ତ ହୋଇଥିଲେ ଏବଂ ପ୍ରକାଶ କରିଥିଲେ ଯେ ସେ କବିତା ଲେଖିବା ବୋଧେ ଭଗବାନଙ୍କ ଇଚ୍ଛା ନୁହ । ତେଣୁ ସେ ଆଉ କବିତା ଲେଖିବେ ନାହିଁ ।

କିନ୍ତୁ ବିଧାତାଙ୍କ ଇଚ୍ଛା ବୋଧହୁଏ ଗୋପବନ୍ଧୁଙ୍କ ଇଚ୍ଛା ସହିତ ସମାନ ନଥିଲା । ସେତେବେଳେ ସାହିତ୍ୟ ରଥିମାନଙ୍କ ଦ୍ୱାରା ସେ ବିଶେଷଭାବେ ପ୍ରଶଂସିତ ହୋଇଥିଲେ ସେଇ କଲେଜ ଜୀବନରେ ଓ ସେମାନେ କ୍ଷି ଥିଲେ ପ୍ରକୃତରେ ଗୁଣଗ୍ରାହୀ ଗୁଣିଆ । କଲେଜରେ ଅଧ୍ୟୟନ କରିବା ସମୟରେ ଥରେ ତାଙ୍କର ଗୋଟିଏ କବିତା 'ମୁକୁର'ରେ ପ୍ରକାଶ ପାଇଥିଲା । ସେଥିର ଗୋଟିଏ ପଦଥିଲା—

"ଅବନ୍ଧ ଜୀବନ ଅସ୍ପୃଶ୍ୟ ମନ୍ତ୍ର
ଦେହ ଧରି କିଏ ପାରିବ ସହି ?"

ମୁକୁରର ପ୍ରକାଶ ପାଇବା ପରେ କବିବର ରାଧାନାଥ ରାୟ ସେଥିରୁ ଖଣ୍ଡିଏ ପତ୍ରିକା ହାତରେ ଧରି ଗୋପବନ୍ଧୁଙ୍କ ବସାରେ ପହଞ୍ଚିଥିଲେ । ଗୁଣଗ୍ରାହୀ ଗୁଣିଆ ଶ୍ରୀଯୁକ୍ତ ରାୟ ଗୋପବନ୍ଧୁଙ୍କୁ କୁଣ୍ଢାଇ ଧରି ହର୍ଷୋତ୍ଫୁଲ୍ଲ ହୋଇ କହିଥିଲେ, "ମୁଁ ଏତେଦିନେ କବିତା ଭଳି କବିତା ଗୋଟିଏ ପାଇଲି । ତା ପରେ କବି ରାଧାନାଥ ଅନେକ ସମୟରେ ସନ୍ଧ୍ୟାବେଳେ ଆସୁଥିଲେ ଗୋପବନ୍ଧୁଙ୍କ ବସାକୁ ଓ ତାହାଙ୍କୁ ସାଙ୍ଗରେ ନେଇ ନଈକୂଳକୁ ଯାଇ ସାହିତ୍ୟ ଆଲୋଚନା କରୁଥିଲେ ।

ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରିବା ସମୟରେ ଯେଉଁ ରାଧାନାଥ ରାୟ ଗୋପବନ୍ଧୁଙ୍କୁ ଅର୍ଥଦଣ୍ଡ କରିଥିଲେ ତାଙ୍କ ବିରୁଦ୍ଧରେ କବିତା ଇନ୍ଦ୍ରଧନୁରେ ପ୍ରକାଶ କରିଥିବା ଅଭିଯୋଗରେ ସେଇ ରାଧାନାଥ ତାଙ୍କ ରଚନାବଳୀ ପ୍ରତି ଆକୃଷ୍ଟ ହୋଇଥିଲେ ପରବର୍ତ୍ତୀ ସମୟରେ ଏପରିକି ତାଙ୍କସହ ସାହିତ୍ୟ ଆଲୋଚନା କରିବାକୁ ମଧ୍ୟ ଆଗେଇ ଆସିଥିଲେ ।

ତାହାହିଁ ଥିଲା ଯୁବକ ଗୁଣୀ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ।

୧୯୦୩ ମସିହାରେ ବି. ଏ. ପରୀକ୍ଷାରେ ପାସ କରିବା ପରେ ପଣ୍ଡିତ ଗୋପବନ୍ଧୁ ୧୯୦୪ ରେ କଲିକତାରେ ଏକାସାଙ୍ଗରେ ଏମ୍. ଏ. ଓ ଆଇନ ଶ୍ରେଣୀରେ ନାମ ଲେଖାଇ ଥିଲେ । କିଛିଦିନ ଉଭୟ ଶ୍ରେଣୀରେ ଅଧ୍ୟୟନ କରିବା ପରେ ସେ ଏମ୍. ଏ. ଶ୍ରେଣୀରେ ଆଉ ଯୋଗ ଦେବାକୁ ଯାଇନଥିଲେ । ତାର ପ୍ରଧାନ କାରଣ ଥିଲା ନିକଟ ଅତୀତରେ ସେ ନୀଳକଣ୍ଠ, ହରିହର ଓ ଅନନ୍ତ ମିଶ୍ରଙ୍କ ସହିତ ଯେଉଁ ପ୍ରତିଜ୍ଞା କରିଥିଲେ ତାହାକୁ କାର୍ଯ୍ୟକାରୀ କରାଇବା ଦିଗରେ ତାହାଥିଲା ଗୋଟିଏ ଦିଗ । ସେମାନେ ସମସ୍ତେ ପ୍ରତିଜ୍ଞା କରିଥିଲେ ଯେ ସେମାନେ କୌଣସି ସରକାରୀ ଚାକିରୀ କରିବେ ନାହିଁ । ଗୋପବନ୍ଧୁ ସରକାରୀ ଚାକିରୀ କରିବାର ପ୍ରଶ୍ନ ଉଠୁନ ଥିବାରୁ ଏମ୍. ଏ. ପଢ଼ିବାର ଆବଶ୍ୟକତା ଉପଲବ୍ଧି କରିନଥିଲେ । ତାଙ୍କର ମତଥିଲା କେବଳ ଓକିଲାତି ପଢ଼ିବା ହିଁ ତାଙ୍କ ପକ୍ଷରେ ଯଥେଷ୍ଟ ହେବ ।

ଅନ୍ୟପକ୍ଷରେ ମୋକ୍ତ୍ୟାର ରାମଚନ୍ଦ୍ର ଦାସଙ୍କୁ ବି ସେ ଜୀବନରେ ଦୀକ୍ଷାଗୁରୁ ବୋଲି ଗ୍ରହଣ କରିଥିଲେ ଏବଂ ଶ୍ରୀଯୁକ୍ତ ଦାସଙ୍କର ଏକାନ୍ତ ଇଚ୍ଛାଥିଲା ଗୋପବନ୍ଧୁ ଓକିଲାତି ଛାଡ଼ି ଦେଶ ସେବା କରିବାକୁ ଆଗେଇ ଆସିବେ । ତାଙ୍କର ସେଇ ଇଚ୍ଛାକୁ ସେ ଏକାଧିକବାର ପ୍ରକାଶ କରିଥିଲେ ଗୋପବନ୍ଧୁଙ୍କ ନିକଟରେ ।

କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଅନେକ ଆଇନ ଉପାଧିର ଶେଷ ପରୀକ୍ଷା ଦେବା ଲାଗି କଲିକତା ଯାଇ ସେଠାରେ ଛଅମାସ ଅବସ୍ଥାନ କରିଥିଲେ ଗୋପବନ୍ଧୁ । ସେଇ ଛ'ମାସ ମଧ୍ୟରେ ଜାତୀୟବାଦୀ ଗୋପବଂଧୁ ସମଗ୍ର କଲିକତାର ବିଭିନ୍ନ ଅଞ୍ଚଳ ବୁଲିବୁଲି ସେଠାରେ ଅବହେଳିତ ହୋଇ ପଡି ରହିଥିବା ଓଡିଆମାନଙ୍କୁ ସଂଘବଦ୍ଧ କରିବାଲାଗି ଉଦ୍ୟମ କରିଥିଲେ । ସେତେବେଳେ ନିଜର ଭରଣପୋଷଣ କରିବା ପାଇଁ ଓଡିଆମାନେ କଲିକତାରେ କାର୍ଯ୍ୟ କରୁଥିଲେ ବିଶେଷ କରି ବିଭିନ୍ନ କାରଖାନାରେ ଶ୍ରମିକ ଭାବେ ସେମାନଙ୍କୁ ଏକାଠି କରି ସେମାନଙ୍କ ମଧ୍ୟରେ ଭ୍ରାତୃତ୍ୱର ବଂଧନ ସୃଷ୍ଟି କରି ସେଇଠି ଗଠନ କରିଥିଲେ "ଓଡ଼ିଆ ଶ୍ରମିକ ସଂଘ' । କଲିକତାରେ ଥିବା ଅଶିକ୍ଷିତ ଓଡ଼ିଆ ମଧ୍ୟରେ ଶିକ୍ଷାର ପ୍ରସାର କରାଇବା ଉଦ୍ଦେଶ୍ୟରେ କେତେକ ସାଂଧ୍ୟ ବିଦ୍ୟାଳୟର ଆୟୋଜନ କରିଥିଲେ ସେ ।

ବି. ଏ. ପରୀକ୍ଷାରେ ପାସ କରିବା ପରେ ଓ ଆଇନ ଅଧ୍ୟୟନ କରିବା ସମୟର କଥା । ସେତେବେଳେ ଗୋପବଂଧୁଙ୍କ ଏକମାତ୍ର ପୁତ୍ରସନ୍ତାନର ସ୍ୱାସ୍ଥ୍ୟ ଭଲ ନଥିଲା । ଦେହରେ ଭୀଷଣ ତାତି । ଘରର ସମସ୍ତେ ଏପରିକି ଗୋପବନ୍ଧୁ ମଧ୍ୟ ତାର ଶଯ୍ୟା ନିକଟରେ । ହଠାତ୍ ସେ ଖବର ପାଇଲେ ଯେ କୁଶଭଦ୍ରା ନଦୀରେ ଅସମ୍ଭବ ବନ୍ୟା— ନଦୀବନ୍ଧ ଭାଙ୍ଗିଯାଇ ପ୍ରବଳ ବେଗରେ ପାଣିସୁଅ ମାଡ଼ି ବିଭିନ୍ନ ଗାଁଗଣ୍ଡା ଭାସିଯାଇଛି ଓ ଲୋକେ ହାହାକାର କରୁଛନ୍ତି । ଗୋପବନ୍ଧୁ ଆଉ

ନିଜ ପୁଅର ରୋଗୀଣା ମୁହଁକୁ ଗୃହିଁ ବସି ରହିପାରଲେ ନାହିଁ । ଉଠିଲେ ଏବଂ ଏକମୁହାଁ ହୋଇ ଗୃଲଲେ ବନ୍ୟା ଦୁର୍ଗତଙ୍କ ନିକଟକୁ ।

ଜନସେବାରେ ଯଜ୍ଞବେଦୀର ଘରକୁ ଫେରଲା ପରେ ଦେଖିଲେ ତାଙ୍କର ତୃଷାପ୍ତ ଏବଂ ଏକମାତ୍ର ଜୀବିତ ପୁତ୍ର ଯେଉଁଠାରୁ ଆସିଥିଲା ସେଠାକୁ ଗୃଲଯାଇଛି । ସେତେବେଳେ ଯୁଗପୁରୁଷ ଗୋପବନ୍ଧୁଙ୍କ ସାନ୍ତ୍ୱନା ଥିଲା— ତାଙ୍କର ଗୋଟିଏ ପୁତ୍ରର ମୃତ୍ୟୁ ହୋଇଥିଲେ ମଧ୍ୟ ଏ ମାଟିର ଶହ ଶହ ଶହ ମଣିଷଙ୍କୁ ସେ ମୃତ୍ୟୁମୁଖରୁ ଟାଣି ଆଣି ପାରିଛନ୍ତି ।



॥ ଚାରି ॥

# ପଛଘୁଞ୍ଚା ନାହିଁ ବୀରର ଜାତକେ

କଲିକତାରେ ଆଇନ ଉପାଧି ପରୀକ୍ଷା ଦେଇସାରିବା ପରେ ପଣ୍ଡିତ ଗୋପବନ୍ଧୁ ଚାହିଁଥିଲେ ସେ ଏଣିକି ନିଜର ଜୀବିକା ଅର୍ଜନ କରିବା ପାଇଁ ଉଦ୍ୟମ କରିବେ । ସେଥିପାଇଁ ବାଲେଶ୍ୱର ଜିଲ୍ଲାର ନୀଳଗିରି ହାଇସ୍କୁଲରେ ପ୍ରଧାନଶିକ୍ଷକଭାବେ ଯୋଗ ଦେଇଥିଲେ । ତେବେ ଗୋପବନ୍ଧୁଙ୍କର ଜଣେ ଘନିଷ୍ଠ ବନ୍ଧୁଙ୍କ ଭାଷାରେ ସେ ଶିକ୍ଷକତା ଗ୍ରହଣ କରିବାର ପ୍ରଧାନ ଉଦ୍ଦେଶ୍ୟ ଥିଲା "ମଣିଷ ଗଢ଼ିବା" । "ଦେଶରେ ଶିକ୍ଷା ବିସ୍ତାର ଓ ପ୍ରକୃତ ମନୁଷ୍ୟ ଗଠନ ତାଙ୍କର ଏ କାର୍ଯ୍ୟ ଗ୍ରହଣର ପ୍ରଧାନ ଉଦ୍ଦେଶ୍ୟ ଥିଲା ।"

ପଣ୍ଡିତ ଗୋପବନ୍ଧୁଙ୍କ ଜଣେ କଲେଜ ସାଥି ଉମାଚରଣ ସେନ ସ୍କୁଲର ପ୍ରଧାନଶିକ୍ଷକ ଥିଲେ । ସେ ସେତେବେଳେ ପ୍ୟାରୀମୋହନ ଏକାଡେମୀରେ ଶିକ୍ଷକ ଥିବା ଆଚାର୍ଯ୍ୟ ହରିହରଙ୍କୁ ସେଠାକୁ ନେବାପାଇଁ ଉଦ୍ୟମ କରୁଥିଲେ ଏବଂ ଉଦ୍ୟମ କରୁଥିଲେ ଶିକ୍ଷାର ଅଭିବୃଦ୍ଧି ସାଙ୍ଗକୁ ସଂସ୍କୃତିର ସୁରକ୍ଷା ଦିଗରେ କିଛି କାର୍ଯ୍ୟ କରିବେ । ଠିକ୍ ଏତିକିବେଳେ ଏକ ସରକାରୀ ଚାକିରୀ ପାଇ ଉମାବାବୁ ଚାଲିଯିବା ପରେ ପ୍ରଧାନଶିକ୍ଷକ ସ୍ଥାନ ଖାଲି ପଡ଼ିଥିଲା । ଗୋପବନ୍ଧୁ ଉମାବାବୁଙ୍କ ଅନୁରୋଧ ରକ୍ଷାକରି ଉକ୍ତ ପଦରେ ଯୋଗ ଦେଇଥିଲେ । ଗୋପବନ୍ଧୁ ଏକା ତ ସେଇ ସ୍କୁଲକୁ ଯାଇ ନଥିଲେ, ସାଙ୍ଗରେ ନେଇଥିଲେ ଆଚାର୍ଯ୍ୟ ହରିହର ଓ ଯଦୁନାଥ ମହାପାତ୍ରଙ୍କୁ । କେବଳ ଶିକ୍ଷକ ହିସାବରେ ନୁହେଁ, ଜଣେ ଦେଶସେବୀ ହିସାବରେ ସେମାନେ ସେଠାରେ ସମ୍ମାନର ପାତ୍ର ହୋଇଥିଲେ ।

ନୀଳଗିରିରେ ଆଚାର୍ଯ୍ୟ ହରିହର ଓ ପଣ୍ଡିତ ଗୋପବନ୍ଧୁ ଗୋଟିଏ ଘରେ ରହୁଥିଲେ । ସମୟ ପାଇଲା ମାତ୍ରେ ସେମାନେ ଚିନ୍ତା କରୁଥିଲେ ଓଡ଼ିଆମାନଙ୍କ ଉନ୍ନତି, ଓଡ଼ିଶାର ଉନ୍ନତି, ବିଚ୍ଛିନ୍ନାଞ୍ଚଳର ମିଶ୍ରଣ ଇତ୍ୟାଦି । ସେତେବେଳକାର କଥା ଆଚାର୍ଯ୍ୟ ହରିହର ତାହାଙ୍କ ଆତ୍ମଲିପିରେ ଲେଖିଛନ୍ତି । "ନୀଳଗିରିରେ ଥିଲାବେଳର ବିଶେଷ ଘଟଣା ମୋର ମନେନାହିଁ । ତେବେ ଏତିକି ମନେ ଅଛି ଯେ ଦାସେ ଆପଣେ ଯେଉଁ କେତେଦିନ ଥିଲେ ସେ ଓ ମୁଁ ଗୋଟିଏ ଘରେ ରହୁ । ରାତି ୩ଟା, ୪ଟା ପରେ ସେ ଆଉ ଶୁଅନ୍ତି ନାହିଁ କି ମତେ ମଧ୍ୟ ଶୁଆଇ ଦିଅନ୍ତି ନାହିଁ, କହନ୍ତି ହରି, ଉଠ । ମୁଁ ଉଠିଲେ ବସି ଆଲୋଚନା ଚାଲେ । କିପରି ଆମ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ହେବ, ସମସ୍ତ ଓଡ଼ିଆଭାଷୀ ଅଞ୍ଚଳ ମିଶ୍ରଣ ହେବ ଓ ସେହି ଭାବରେ ଅନୁପ୍ରାଣିତ ହୋଇ କେତେକ ଯୁବକ କର୍ମୀ ତିଆରି ହେବେ ଇତ୍ୟାଦି"(୧)

ଗୋପବନ୍ଧୁ ନୀଳଗିରିରେ ଶିକ୍ଷକତା କରିଥିଲେ ମାତ୍ର ତିନି ଚାରି ମାସ ପାଇଁ । ତଥାପି ସେହି ସ୍ୱଳ୍ପ ରହଣି ମଧ୍ୟରେ ତାହାଙ୍କ ଜୀବନରେ ଅନେକଗୁଡ଼ିଏ ରୋମାଞ୍ଚକର ଘଟଣା ଘଟିଯାଇଥିଲା । ଯେ କୌଣସି ସାଧାରଣ ଲୋକ ପକ୍ଷରେ ତାହା ସହ୍ୟ କରିବା ହୁଏତ ଅସହ୍ୟ ହୋଇ ଉଠିଥାଆନ୍ତା । କିନ୍ତୁ ବାସ୍ତବିକ୍ କେବଳ ଉତ୍କଳ କାହିଁକି, ସମଗ୍ର ଭାରତକୁ ଆଲୋକିତ କରିପାରିଥିବା ଅସାଧାରଣ ମହାମାନବ ଗୋପବନ୍ଧୁ ତାହାକୁ ସହ୍ୟକରି ନେଇଥିଲେ । ସେ ଥିଲେ ନିର୍ବିକାର ପୁରୁଷ ।

ପଣ୍ଡିତ ଗୋପବନ୍ଧୁଙ୍କ ଦୀକ୍ଷାଗୁରୁ ପୁରୀର ମୋକ୍ତାର ଶ୍ରୀଯୁକ୍ତ ରାମଚନ୍ଦ୍ର ଦାସ ୧୯୦୭ ମସିହା ଜୁଲାଇ ୩୧ ତାରିଖ ଶ୍ରାବଣ ଶୁକ୍ଳ ଝୁଲଣ ଏକାଦଶୀ ଦିନ ଦେହତ୍ୟାଗ କରିଥିଲେ ଅମରଧାମ ପୁରୀଠାରେ । ସମ୍ବାଦ ପାଇବା ପରେ ସେ ମର୍ମାହତ ହୋଇପଡ଼ିଥିଲେ । ସେତେବେଳ ପର୍ଯ୍ୟନ୍ତ ଯଦି ଜଣକ ନିକଟରୁ ଗୋପବନ୍ଧୁ କୌଣସି କାର୍ଯ୍ୟରେ ପରାମର୍ଶ ଗ୍ରହଣ କରୁଥିଲେ ସେ ଥିଲେ ରାମଚନ୍ଦ୍ର ବାବୁ । ଉଗ୍ର ଜାତୀୟବାଦୀ,

(୧) ଋଷିପ୍ରାଣ ହରିହର—ପୃ ୨୭

ଦେଶବନ୍ଧୁ ଓଡ଼ିଆପ୍ରେମୀ ରାମଚନ୍ଦ୍ରଙ୍କ ବ୍ୟକ୍ତିତ୍ୱ ଗୋପବନ୍ଧୁଙ୍କର ସେତେବେଳେ ମନେ ପଡ଼ି ଯାଇଥିବ—ମନେ ପଡ଼ିଯାଇଥିବ ରାମଚନ୍ଦ୍ର କରାଇଥିବା ପ୍ରତିଜ୍ଞା ସମ୍ବନ୍ଧ ତାଙ୍କ ବନ୍ଧୁ ବାସୁଦେବ ରଥ ସମେତ ଅନ୍ୟାନ୍ୟ ତିନି ଜଣ କଲେଜ ପଢ଼ୁଆ ଯୁବକଙ୍କୁ "ତୁମେ ଅଛ ପାଞ୍ଚ ଜଣ । ତୁମେ ଶପଥ ନିଅ ଯେ ପ୍ରତ୍ୟେକେ ଅନ୍ତତଃ ପାଞ୍ଚଜଣଙ୍କୁ ଶିକ୍ଷିତ କରାଇବାରେ ସାହାଯ୍ୟ କରିବ । ତୁମ ଶିଷ୍ୟମାନେ ଏପରି ଶିକ୍ଷା ପାଇବେ ଯେ ତୁମ ଆଦର୍ଶରେ ସେମାନେ ପ୍ରତ୍ୟେକ ପାଞ୍ଚ ଜଣଙ୍କୁ ଶିକ୍ଷା ଦେବାରେ ବ୍ୟବସ୍ଥା କରିବେ । ତାହାହେଲେ ପାଞ୍ଚ ବର୍ଷ ଭିତରେ ଆମ ଓଡ଼ିଶାରେ ଶିକ୍ଷିତଙ୍କ ସଂଖ୍ୟା ବହୁତ ବଢ଼ିଯିବ ।"

ଗୋପବନ୍ଧୁଙ୍କ ପାଇଁ ମୋକ୍ତ୍ୟାର ରାମଚନ୍ଦ୍ର ଦାସଙ୍କ ମୃତ୍ୟୁ ସମ୍ବାଦ ଥିଲା ଗୋଟିଏ ଦୁଃସମ୍ବାଦ । ଆଉ ଗୋଟିଏ ଦୁଃସମ୍ବାଦ ଥିଲା ଅତ୍ୟନ୍ତ ମର୍ମାନ୍ତକ—ଅତ୍ୟନ୍ତ ଯନ୍ତ୍ରଣାଦାୟକ । ଯଦିଓ ସେଠାରେ ଥିବା ସମୟରେ ସେ ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଯାଇଥିବା ସମ୍ବାଦ ପାଇଥିଲେ ସେ ସମ୍ବାଦ ଯେତିକି ଆନନ୍ଦ ଦେଇଥାନ୍ତା ତାହାଠାରୁ ଶତଗୁଣ ଅଧିକ ଦୁଃଖ ଦେଇଥିଲା ତା ସମ୍ବନ୍ଧ ଆଉ ଗୋଟିଏ ସମ୍ବାଦ—ତାଙ୍କ ପ୍ରିୟତମା ପତ୍ନୀ, ତାଙ୍କ ଜୀବନର ଅର୍ଦ୍ଧାଙ୍ଗ, ପାର୍ଥିବ ପୃଥିବୀ ପରିତ୍ୟାଗ କରି ଚାଲିଯାଇଛନ୍ତି ।

ପତ୍ନୀଙ୍କ ମୃତ୍ୟୁ ପରେ ପରେ ତାଙ୍କର ଅନେକ ବନ୍ଧୁ ଗୋପବନ୍ଧୁଙ୍କୁ ବିଭିନ୍ନ ପ୍ରକାରେ ପ୍ରବର୍ତ୍ତିନା କରିଥିଲେ ପୁନଶ୍ଚ ବିବାହ କରିବା ପାଇଁ । ବିଭିନ୍ନ ପ୍ରକାର ଉପାୟ ମଧ୍ୟ ପାଞ୍ଚିଥିଲେ । କେବଳ ଉପାୟ ନୁହେଁ ମେଦିନୀପୁରର ଜଣେ ବିଶିଷ୍ଟ ଓଡ଼ିଆ ଓକିଲ ଶ୍ରୀ ରାଧାନାଥ ପତିଙ୍କ କନ୍ୟାଙ୍କୁ ପତ୍ନୀରୂପେ ମଧ୍ୟ ସ୍ଥିରକରି ଗୋପବନ୍ଧୁଙ୍କୁ ଉତ୍ସାହିତ କରାଇଥିଲେ । ହେଲେ ଗୋପବନ୍ଧୁ ତାଙ୍କ ପ୍ରତିଜ୍ଞାରେ ଅଟଳ, ଅଚଳ । ପୁଣି ବିବାହ କରିବେ ନାହିଁ । ସେ ମନେ କରିଥିଲେ ଭଗବାନଙ୍କ ଇଚ୍ଛା ସେ ଏକାକୀ ରୁହନ୍ତୁ, ତାହା ହିଁ ଭଗବାନଙ୍କ ଆଶୀର୍ବାଦ । ତାଙ୍କର ବଳିଷ୍ଠ ଯୁକ୍ତି ଥିଲା ଆମ ହିନ୍ଦୁଶାସ୍ତ୍ରର ମତ ଅନୁସାରେ ସ୍ତ୍ରୀ ତା ଜୀବନରେ ମାତ୍ର

ଗୋଟାଏ ପୁରୁଷକୁ ପତିରୂପେ ଗ୍ରହଣ କରିପାରେ । ତାକୁହିଁ କୁହନ୍ତି ସତୀତ୍ୱ । ସେଥିପାଇଁ ଏହି ହିନ୍ଦୁ ଜାତିର ଏକ ବିରାଟ ଐତିହ୍ୟ ଅଛି । ନାରୀ ଥରେ ବିଧବା ହେଲେ ଯାବଜ୍ଜୀବନ ସେଇମିତି ପୁରୁଷ ବିହୁନେ ବିତାଇବାକୁ ହୋଇଥାଏ । ତାହାହେଲେ କି ଯୁକ୍ତି ଥାଇପାରେ ଥରେ କୌଣସି ପୁରୁଷ ତାର ସ୍ତ୍ରୀର ମୃତ୍ୟୁ ଯୋଗୁଁ ବିପତ୍ନିକ ହେଲେ ସେ ପୁନଶ୍ଚ ବିବାହ କରିବ ? ତେଣୁ ସେ ଚାହିଁଥିଲେ ସେ ଆଉ ବିବାହ କରିବେ ନାହିଁ— ତ୍ରିଣପୁର ସୁହାଗ ସେ ପୁନଶ୍ଚ କାମନା କରିନଥିଲେ ।

"ତ୍ରିଣପୁର ସୁହାଗ ଲୋତକ, ସୁଖ ଦୁଃଖ ଆହ୍ଲାଦ ଯାତନା
ଜୀବନେ ମୁଁ ଭୋଗିଛି ଅନେକ, ନାହିଁ ଆଉ ଅଧିକ କାମନା ।"

ଗୋପବନ୍ଧୁ ମନେ କରିଥିଲେ ଘର, ପରିବାର, ସ୍ତ୍ରୀ, ପୁତ୍ର— ଏମାନେ ସାଂସାରିକ ବନ୍ଧନ । ଏହି ସାଂସାରିକ ବନ୍ଧନ ଜାତିର ସେବା କାର୍ଯ୍ୟରେ ଅନେକ ବାଧା ଉପୁଜାଇ ଥାଆନ୍ତି । ଅଧ୍ୟାପକ ବୃନ୍ଦାବନ ଆଚାର୍ଯ୍ୟଙ୍କ ଭାଷାରେ "ଏହାହାରି ଯାହା କିଛି ପାରିବାରିକ ସମ୍ପର୍କ ଦେଶସେବା କାର୍ଯ୍ୟରେ ବିଘ୍ନ ଘଟାଇ ପାରିଥାନ୍ତା ସେ ସବୁ ବନ୍ଧନ ମଧ୍ୟ ଛିଣ୍ଡିଗଲା । ଫଳରେ କର୍ମବୀର ଗୋପବନ୍ଧୁଙ୍କ ବଜ୍ର କଠୋର ହୃଦୟ ଦେଶସେବା ବ୍ରତରେ ଅଟଳ ଅଚଳ ପରି ସ୍ଥିର ରହିଲେ ।" (୨) ସେ ମନେ କରିଥିଲେ ଏଣିକି ତାଙ୍କର କୌଣସି କାର୍ଯ୍ୟରେ କେହି ପ୍ରତିବାଦ କରିବାକୁ ନଥିବ । ତାଙ୍କର ଇଚ୍ଛା ପୂରଣ କରିବା ବାଟରେ କେହି ବାଧା ଦେବାକୁ ନଥିବ । ସାଂସାରିକ ବନ୍ଧନର ପ୍ରଶ୍ନ ନାହିଁ । ସେଥିପାଇଁ ତାଙ୍କର ଅଭିବ୍ୟକ୍ତି ଥିଲା—

ଶୁଣି ଖଗ ମଧୁର କାକଳୀ ଜୀର୍ଣ୍ଣବୀଣା ରଖିବ ସମ୍ବାଦ ।
ପକ୍ଷୀ ଗୀତେ ଦେବ କରତାଳି, କେହି ମୋର ନଥିବେ ବିବାଦ ।

ବାସ୍ତବିକ ଜୀବନକୁ ଜୟ କରିପାରିଥିବା ଗୋପବନ୍ଧୁ ଉତ୍କଳୀତ ଜୀବନ ଆରମ୍ଭ କରିବା ଲାଗି ମନସ୍ଥ କରି ମାନଚିରି ଛାଡିଲେ କଟକ

(୨) ଅଧ୍ୟାପକ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ—"ସତ୍ୟବାଦୀଯୁଗ"

ଭାରତବର୍ଷରେ ୧୯୦୭ ମସିହାରେ । ଓକିଲାତି କଲେ ଗୋପବନ୍ଧୁ ଚୌଧୁରୀଙ୍କ ପାଖରେ ରହି ।

ଅଗଷ୍ଟ ମାସ । ଗୋପବନ୍ଧୁ ବାଲେଶ୍ୱରରୁ କଟକ ଆସିବା ଖୁବ୍ ଅଳ୍ପଦିନ ପରେ ପରେ ଖବର ପାଇଥିଲେ ଯେ କେନ୍ଦ୍ରାପଡ଼ା ସବ୍-ଡ଼ିଭିଜନ୍‌ର ଇନ୍ଦ୍ରପୁରଠାରେ ବନ୍ୟା ପ୍ରବଳ ତାଣ୍ଡବ ସୃଷ୍ଟି କରିଛି । ବ୍ରାହ୍ମଣୀ ନଦୀରେ ଆସିଥିବା ବନ୍ୟାର ପରିଣାମ ସ୍ୱରୂପ ସେଠି ନଦୀବନ୍ଧ ଧାଇ ଭାଙ୍ଗି ଯାଇଛି । ସେଇ ଅଞ୍ଚଳ ଲୋକଙ୍କ ହାହାକାର ଧ୍ୱନି ସତେ ଯେମିତି ଗୋପବନ୍ଧୁଙ୍କ ନିକଟରେ ପ୍ରତିଧ୍ୱନିତ ହେଲା । ସେ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ତାଙ୍କର ସହକର୍ମୀମାନଙ୍କୁ ଧରି ଖବର ପାଇବା ପରମୁହୂର୍ତ୍ତରୁ ହିଁ ଚୂଡ଼ା ଗୁଡ଼ଳ ସଂଗ୍ରହ କରିବାରେ ଲାଗିପଡ଼ିଥିଲେ । କାଳ ବିଳମ୍ବ ନକରି ମାଳକଣ୍ଠଙ୍କ ଭଳି ସ୍ୱେଚ୍ଛାସେବକ-ମାନଙ୍କୁ ନେଇ ବାହାରି ପଡ଼ିଥିଲେ ବନ୍ୟା ଦୁର୍ଗତ ଅଞ୍ଚଳକୁ ।

ହାୟରେ ହତଭାଗ୍ୟ ଓଡ଼ିଶା ! ଉପଦ୍ରୁତ ଅଞ୍ଚଳର ପରିସ୍ଥିତି ଦେଖିଲେ ବନ୍ୟାଜଳ ସଂମ୍ପୂର୍ଣ୍ଣ ଆଚ୍ଛାଦିତ କରି ରଖିଛି ବା ସଂପୂର୍ଣ୍ଣ ଧ୍ୱଂସ କରିଦେଇଛି ଅନେକ ଗ୍ରାମକୁ । ଜନବସତିର ସତ୍ତା ନାହିଁ । ଡ଼ଙ୍ଗା ନେଇ ବାହାରି ପଡ଼ିଲେ—ଯେଉଁମାନେ ବଞ୍ଚିଛନ୍ତି ଏବଂ ଯେନ ତେନ ପ୍ରକାରେଣ କେଉଁଠି ଆଶ୍ରା ନେଇଛନ୍ତି ସେମାନଙ୍କୁ ଉଦ୍ଧାର କରିବାକୁ ହେବ । ଡ଼ଙ୍ଗା ଚାଲିଲା । ଅସଂଖ୍ୟ ଶବକୁ ପାଣିରେ ଆଡ଼େଇ ଆଡ଼େଇ ଡ଼ଙ୍ଗା ଚାଲିଥିଲା । ଏ ଗାଁରୁ ସେ ଗାଁ, ସେ ଗାଁରୁ ପୁଣି ଆଉ ଗୋଟିଏ ଗାଁ ।ଆ ତା ପରେ ପୁଣି ଆଉ ଗୋଟାଏ ।

ସେଇମିତି ଯାଉ ଯାଉ ପଣ୍ଡିତ ମାଳକଣ୍ଠଙ୍କୁ ଶୋଷ ହେଲା ସେ ଦେଖିଲେ ପିଇବା ପାଇଁ ନେଇଥିବା ପାଣି କେତେବେଳେ ଶେଷ ହୋଇଯାଇଛି । ସେ ଟିକିଏ ଚିନ୍ତିତ ହୋଇ ପଡ଼ିଲେ । ଯେଉଁ ବନ୍ୟା ପ୍ଲାବିତ ଜଳ ଉପରେ ଡ଼ଙ୍ଗା ବାହି ଚାଲିଥିଲେ ତାହା ପାନ କରିବା ପାଇଁ ବୋଧହୁଏ ପ୍ରଥମେ କୁଣ୍ଠିତ ହୋଇଥିଲେ ନିଜର ସ୍ୱାସ୍ଥ୍ୟ ତଥା ସମ୍ମୁଖରେ ଉପସ୍ଥିତ କର୍ତ୍ତବ୍ୟ ଅଧା ପଡ଼ି ରହିଥିବା ଦୃଷ୍ଟିରୁ । ତେଣେ

ପ୍ରବଳ ତୃଷା ହେଉଥିଲା । ତେଣୁ ସେ କହୁଥିଲେ—"ଏ ପାଣିରେ ତ ମଡ଼ା ଭାସୁଛି, ଏ ପାଣି ପିଇବା କପରି ? ହଇଜା ହୋଇପାରେ ।" ଗୋପବନ୍ଧୁଙ୍କ ଆତ୍ମପ୍ରତ୍ୟୟ ଅତ୍ୟନ୍ତ ଦୃଢ଼ ଥିଲା, ଦୃଢ଼ ଥିଲା ଆଧ୍ୟାତ୍ମିକ କର୍ତ୍ତବ୍ୟବୋଧ, ମାନବିକ କର୍ତ୍ତବ୍ୟବୋଧ । ଯେ କୌଣସିମତେ କାର୍ଯ୍ୟ କରିବାକୁ ହେବ—ଏ ଦୃଢ଼ ପ୍ରତିଜ୍ଞା । ସେଥିପାଇଁ ଗୋପବନ୍ଧୁ ସେ ପ୍ରଶ୍ନର ଉତ୍ତର ଦେଇଥିଲେ ଅତି ସରଳଭାବେ—"ଏ ତ ପ୍ରକୃତି ମାତା । ଯାହା ମିଳିଲା ତାକୁ ପିଇ କର୍ତ୍ତବ୍ୟ କରିବାକୁ ହେବ । ତେଣିକି ଭଗବାନ ଯାହା କରିବେ ।"

ଆଦର୍ଶପୁରୁଷ ଗୋପବନ୍ଧୁ କେବଳ ସେ ଉତ୍ତର ଦେଇ ମାଳକଣ୍ଠ ପ୍ରଭୃତିଙ୍କୁ ସନ୍ତୁଷ୍ଟ କରିନଥିଲେ, ସେଇ ବନ୍ୟାପ୍ଲାବିତ, ମଡ଼ା ଭାସୁଥିବା ଦୂଷିତ ଜଳରୁ ମୁନ୍ଦାଏ ଆଣି ସର୍ବପ୍ରଥମେ ପାନ କରିଥିଲେ । ଉପସ୍ଥିତ କର୍ତ୍ତବ୍ୟର ସମ୍ପାଦନା ଲାଗି ସେ ଥିଲେ ଦୃଢ଼ପ୍ରତିଜ୍ଞ, ମନୋବଳ ଥିଲା ସଂପୂର୍ଣ୍ଣ ପ୍ରସ୍ତୁତ—କୌଣସି ପ୍ରକାର ବାଧା ତାଙ୍କର କାର୍ଯ୍ୟରେ ବାଧା ଘଟାଇ ପାରିନଥିଲା । ତା ପରେ ସମସ୍ତେ ସେହି ପାଣି ପିଇବା ଆରମ୍ଭ କରିଦେଇଥିଲେ ନିର୍ବିକାର ଚିତ୍ତରେ । ସେ କେବଳ ଉପଦେଶ ଦେଉନଥିଲେ, କାର୍ଯ୍ୟରେ ତାହାକୁ ପରିଣତ କରି ଦେଖାଇଦେବା ଥିଲା ତାଙ୍କର ଆଦର୍ଶ ।

କଟକରେ ପାଖାପାଖି ବର୍ଷେ ଓକିଲାତି କରିବା ପରେ ସେ ସେଇ ଉଦ୍ଦେଶ୍ୟରେ ଯାଇଥିଲେ ପୁରୀ । ସେଠାରେ ରହୁଥିଲେ ମୋକ୍ତାର ରାମଚନ୍ଦ୍ର ଦାସଙ୍କ ଘରେ । ସେତେବେଳେ ସେଠାରେ ଓକିଲାତି ଆରମ୍ଭ କରିଥିଲେ ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ । ମାନବବାଦୀ ରାମଚନ୍ଦ୍ର ଦାସ ଏ ଦୁହିଙ୍କଠାରୁ ବାସ୍ତବ କ୍ଷେତ୍ରରେ ପ୍ରବେଶ କରିବା ବହୁ ପୂର୍ବରୁ ଶପଥ କରାଇ ନେଇଥିଲେ ଯେ ଯେଉଁ ପକ୍ଷ ପ୍ରକୃତରେ ସତ୍ୟ ପ୍ରକାଶ କରିବ ତାଙ୍କର ପକ୍ଷରେ କଚେରୀରେ ଲଢ଼ିବେ ଏମାନେ । ସେତେବେଳେ ପୁରୀର ଓଡ଼ିଆ ଓକିଲ ହିସାବରେ ଗୋପବନ୍ଧୁ ସୁଖ୍ୟାତି ଅର୍ଜନ କରି-ପାରିଥିଲେ ଖୁବ୍ କମ୍ ସମୟ ମଧ୍ୟରେ । ଇଚ୍ଛା କରିଥିଲେ ଅନେକ

ରୋଜଗାର ମଧ୍ୟ କରିପାରିଥାନ୍ତେ । କିନ୍ତୁ କେବଳ ଧନଅର୍ଜନ କରିବା କ୍ୱିଁ ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ନଥିଲା । ଉଦ୍ଦେଶ୍ୟ ଥିଲା ମାନବ ସେବା, ଦେଶ ସେବା । ଏହିପରି ଦୃଷ୍ଟାନ୍ତ ମଧ୍ୟ ରହିଛି ଯେ ଗୋଟିଏ ପକ୍ଷରେ ମୋକଦ୍ଦମାର ଭାର ଗ୍ରହଣ କରି ମଧ୍ୟ ଏବଂ କଚେରୀରେ କିଛିଦିନ ସେଇ ପକ୍ଷ ପାଇଁ ଲଢ଼ି ମଧ୍ୟ ଯେତେବେଳେ ଉତ୍କଳ ଗୋପବନ୍ଧୁ ଜାଣୁଥିଲେ ଯେ ତାଙ୍କ ପକ୍ଷର ମହକିଲ ପ୍ରକୃତ ଅପରାଧୀ ସେ ପକ୍ଷ ସଙ୍ଗେ ସଙ୍ଗେ ତ୍ୟାଗ କରୁଥିଲେ । ଆଉ ତା ପାଇଁ କଚେରୀ ପିଣ୍ଡା ମାଡ଼ୁ ନଥିଲେ ।

ଗୋପବନ୍ଧୁଙ୍କ ସହପାଠୀ ତଥା ସହକର୍ମୀ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ ଭାଷାରେ "ଗୋପବନ୍ଧୁ ଓକିଲାତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରଥମେ କଟକରେ ଓକିଲାତି କଲେ । ମିଥ୍ୟା ମୋକଦ୍ଦମାକୁ ସେ ଘୃଣା କରୁଥିଲେ । ଯାହା ନିରାଟ ସତ୍ୟ ଥିଲା, ସେହି ମୋକଦ୍ଦମାରେ ଗୋପବନ୍ଧୁ ଲଢୁଥିଲେ । ତାହାଙ୍କର ଏତାଦୃଶ ସାଧୁତା ଦେଖି ମୟୂରଭଞ୍ଜର ମହାରାଜା ସ୍ୱର୍ଗୀୟ ରାମଚନ୍ଦ୍ର ଦେବ ତାହାଙ୍କୁ ନିଜ ରାଜ୍ୟକୁ ଡକାଇ ନେଲେ । ସେଠାରେ ସେ ଓକିଲାତି କଲେ ଏବଂ ମହାରାଜାଙ୍କ ରାଜ୍ୟସଭାର ସଭ୍ୟ ହେଲେ ।"

ପୁରୀରେ ଓକିଲାତି କରିବା ସମୟ ଥିଲା ପ୍ରାୟ ଦେଢ଼ ବର୍ଷ । ସେଇ ଭିତରେ ସେ ପୁରୀ କୁଷ୍ଠାଶ୍ରମର ସେକ୍ରେଟାରୀଭାବେ କାର୍ଯ୍ୟକରି ଯେତେ ସୁବିଧା କରିହେବ ସେତିକ କରିବା ପାଇଁ ଚେଷ୍ଟା କରିଥିଲେ । ନିଜେ ଆର୍ଥିକ ସାହାଯ୍ୟ ଦେବା ସଙ୍ଗେ ସଙ୍ଗେ ଗୃହା ଆଦାୟ କରି ଅନୁଷ୍ଠାନକୁ ସ୍ଥାୟୀ କରିବା ଦିଗରେ ଉଦ୍ୟମ କରିଥିଲେ । ସେତେବେଳେ ସରକାରଙ୍କ ଦ୍ୱାରା ପୁରୀ ମ୍ୟୁନିସିପାଲଟିର ସଭ୍ୟ ମନୋନୀତ ହେଉଥିଲା ଏବଂ ପଣ୍ଡିତ ଗୋପବନ୍ଧୁ ଜଣେ କାଉନ୍‌ସିଲର ଭାବେ ମନୋନୀତ ହୋଇଥିଲେ । ତଦ୍‌ବ୍ୟତୀତ ସାକ୍ଷୀଗୋପାଳ ମନ୍ଦିରର ଜଣେ ଟ୍ରଷ୍ଟୀଭାବେ ମଧ୍ୟ ସେ ମନୋନୀତ ହୋଇଥିଲେ ।

ସ୍ୱର୍ଗତଃ ରାମଚନ୍ଦ୍ର ଦାସଙ୍କ ଦ୍ୱାରା ଓ ତାଙ୍କ ଆଦର୍ଶରେ ଗଠିତ ପୁରୀ ବ୍ରାହ୍ମଣ ସମିତି ଛାତ୍ରାବାସର ଅନ୍ତେବାସୀଗଣଙ୍କ ସହିତ ବରାବର ଆଲୋଚନା କରୁଥିଲେ । ସେଠାରେ ଛୋଟ ଛୋଟ ସଭା ସମିତିର

ଆୟୋଜନ ମଧ୍ୟ କରୁଥିଲେ ଓ ଦେଶର ବଭିନ୍ନ ସମସ୍ୟାବଳୀ ଉପରେ ଆଲୋଚନା କରୁଥିଲେ । ଏତଦ୍‌ବ୍ୟତୀତ ଗୋଟାଏ ବ୍ୟାୟାମଶାଳା ପ୍ରତିଷ୍ଠା କରାଇ ଯୁବ ସମାଜର ଉତ୍ତମ ସ୍ୱାସ୍ଥ୍ୟ ଗଠନ କରିବା ଲାଗି ସେମାନଙ୍କ ମନ ମଧ୍ୟରେ ସଚେତନତା ଆଣାଇବା ମଧ୍ୟ ଉଦ୍ୟମ କରିଥିଲେ । ପୁଣି ପୁରୀରୁ କଟକ ଗୁଳିଆସିଥିଲେ ୧୯୦୯ ମସିହାରେ । ଏଥର ଦେଶପ୍ରାଣ ମଧୁସୂଦନଙ୍କ ନିକଟରେ ରହି ଓକିଲାତି ଆରମ୍ଭ କରିଥିଲେ ।

କଟକରେ ଓକିଲାତି ଜୀବନ ଅତିବାହିତ କରୁଥିବା ସମୟରେ ଭବିଷ୍ୟତ୍ ଜାତୀୟ କାର୍ଯ୍ୟକଳାପକୁ ଆଖି ଆଗରେ ରଖି ଏକ "ଭବିଷ୍ୟତ୍ ଜାତୀୟ ବାହିନୀ"ର ମୂଳଭିତ୍ତି ଗଠନ କରିବା ଉଦ୍ଦେଶ୍ୟକୁ ଫଳବତୀ କରିବାକୁ ଚେଷ୍ଟା ଆରମ୍ଭ କରିଦେଇଥିଲେ । ସେଇ ଉଦ୍ଦେଶ୍ୟରେ ସେ ପ୍ରାୟ ସମଚିନ୍ତାଧାରାସମ୍ପନ୍ନ ୫୦ ଜଣ ଯୁବକଙ୍କୁ ଏକାଠି କରିଥିଲେ । ପଣ୍ଡିତ ଗୋପବନ୍ଧୁଙ୍କୁ ଅଜାଣତରେ ଘଣ୍ଟେ ସମୟ ଲାଗିଥିଲା ଜାତୀୟ ବାହିନୀର ସଭ୍ୟ ସଂଗ୍ରହ କରିବା ସକାଶେ । ସେଇ ପଚିଶ ଜଣ ଯୁବକଙ୍କୁ ନେଇ କଟକରୁ ଧବଳେଶ୍ୱର ଯାଇଥିଲେ । ଉଦ୍ଦେଶ୍ୟ ଥିଲା ଜଣ ଜଣ କରି ସେଇଠି ଦେବୀଙ୍କ ପୀଠରେ, ସେହି ଧର୍ମପୀଠରେ ଦେବୀ ବିଗ୍ରହକୁ ଛୁଇଁ ଶପଥ ଗ୍ରହଣ କରିବାକୁ ହେବ—ସେ ଶପଥ ଥିଲା ନିଜକୁ ଦେଶ ଓ ଦଶର ସେବା କାର୍ଯ୍ୟରେ ସମ୍ପୂର୍ଣ୍ଣ ନିୟୋଜିତ କରିବା ପାଇଁ –ନିଜ ନିଜକୁ ଜାତୀୟ ଜୀବନ ଯଜ୍ଞରେ ବଳି ଦେବା ପାଇଁ ଶପଥ କରିବା । ପଣ୍ଡିତ ଗୋଦାବରୀଶ ମିଶ୍ର ସେ ଘଟଣାର ସ୍ମରଣ କରି ଯେଉଁ ପ୍ରତ୍ୟକ୍ଷ ବିବରଣୀ ଦେଇଥିଲେ ତାହା ପାଠ କଲେ ହିଁ ଦେହରେ ଶିହରଣ ଆସିଥାଏ । ଦେବତା ସିଂହାସନରେ ବସିଥାନ୍ତି, ମୁଜକ ଗୋପବନ୍ଧୁ ପାଖେ ପାଖେ ରହିଥାନ୍ତି । ଆମ୍ଭେମାନେ ଜଣ ଜଣ ହୋଇ ଦେଶସେବା ବ୍ରତରେ ନିଜକୁ ବଳି ଦେବାକୁ ଗୁଳାଥାଉଁ । × × × ଆମ୍ଭେମାନେ ଗୋଟିଏ ଗୋଟିଏ ଗୁଣରେ ଶପଥ ନେବା ଲାଗି ଯାଇଥିଲୁ । ସତ୍ୟ, ନିଷ୍ଠା, ସେବା, କ୍ଷମା, ସାହସ, ଅହିଂସା ଆର୍ଜବ ଆଦି କେତେଗୁଡ଼ାଏ ଗୁଣ ସ୍ଥିର କରାଗଲା । ସବୁ ଗୁଣଗୁଡିକ ତ ମନୁଷ୍ୟର ଦରକାର; କିନ୍ତୁ ଜଣେ

ଜଣେ ଗୋଟିଏ ଗୋଟିଏ ଗୁଣର ସମଧିକ ବୃଦ୍ଧି ନିଜ ଜୀବନରେ ସାଧନ କରିବାକୁ ସଙ୍କଳ୍ପ ପାଇଁ ଯାଇଥିଲୁ । ମୁଁ ସତ୍ୟ ବାଛି ନେଇଥିଲି × × × କେହି କେହି ଏକାଧିକ ଗୁଣ ବରଣ କରିନେଲେ । ଆମ୍ଭେମାନେ ମିଥ୍ୟା, କପଟ, ହିଂସା, ଖଳତା ଆଦି ମନୁଷ୍ୟ ସୁଲଭ ଗୁଣଗୁଡ଼ିକ ସେ ପୁଣ୍ୟ ଯଜ୍ଞପୀଠରେ ବଳି ଦେଲୁ । ଗୋପବନ୍ଧୁ ଆମ୍ଭ-ମାନଙ୍କ ପାଇଁ ପ୍ରାର୍ଥନା କଲେ ।"

ପଣ୍ଡିତ ଗୋଦାବରୀଶ ସେଦିନ ସେଇଠି ସତ୍ୟଗୁଣ ବରଣ କରି ନେଇଥିଲେ । "ମୁଁ ଆଜି ସତ୍ୟଗୁଣ ବରଣ କରୁଛି, କାୟମନୋ-ବାକ୍ୟରେ ସତ୍ୟ ପାଳନ କରିବି । ସର୍ବାନ୍ତର୍ଯ୍ୟାମୀ ଭଗବାନ୍ ମୋତେ ଏଥିପାଇଁ ବଳ ଦିଅ ।" ଶପଥ ଗ୍ରହଣ କରିବା ସମୟରେ ଗୋଦାବରୀଶ ନିଜର ଅନୁଭୂତି ବର୍ଣ୍ଣନା କରିଥିଲେ "ଶପଥ ଗ୍ରହଣ କରିବାକୁ ଗଲାବେଳେ ମୋର ହୃଦୟତନ୍ତ୍ରୀ ବାଜି ଉଠିଲା । ଦେହର ଗ୍ରନ୍ଥିମାନ ଛିଣ୍ଡିବାକୁ ବସିଲା । ମାଂସପେଶୀ ସବୁ ମନ୍ଥି ହୋଇଗଲା । ଶିରାପ୍ରଶିରା ଟିକିଟିକି ହେଲାପରି ଲାଗିଲା । ହୃତ୍‌ପିଣ୍ଡ ଠକ୍ ଠକ୍ ଶବ୍ଦ କଲା । ମିଥ୍ୟା ସହିତ କେତେକ ଅଚ୍ଛେଦ୍ୟ ବନ୍ଧୁତା ବାନ୍ଧିଥିଲି । ସବୁ ଛିଣ୍ଡେଇ ଦେବାକୁ ପଡିଲା ।"

ସେଭଳି ପରିସ୍ଥିତି ଓ ପରିବେଶ ସୃଷ୍ଟି ହେବାର ଏକମାତ୍ର କାରଣ ଥିଲା ଜଣେ ବ୍ୟକ୍ତିର ବ୍ୟକ୍ତିତ୍ୱ । ସେଦିନ ଯେଉଁ ଯୁବକୁଳ ଅନୁପ୍ରାଣିତ ହୋଇଥିଲେ, ଏଇ ସତ୍ୟନିଷ୍ଠା ଆଚରଣ କରିବାଲାଗି ଯେଉଁମାନେ ଶପଥ ନେଇଥିଲେ, ଧବଳେଶ୍ୱର ଦେବୀପୀଠରେ ମନୁଷ୍ୟ ସୁଲଭ ଦୋଷଗୁଣଗୁଡ଼ିକ ଯେଉଁମାନେ ବଳି ଦେଇଥିଲେ ସେହିମାନଙ୍କୁ ସେଇ ପଥର ସାକ୍ଷୀଭାବେ ଗୋପବନ୍ଧୁଙ୍କ ବ୍ୟତୀତ ଆଉ ଜଣେ କିଏ ସେହିଭଳି ପ୍ରେରଣା ଦେଇପାରିଥାନ୍ତା ତାହା ସନ୍ଦେହଜନକ । ସେଇମାନଙ୍କ ନିଷ୍ଠା ହିଁ ତ ଗୋପବନ୍ଧୁଙ୍କ ସ୍ୱପ୍ନ ଅନେକ କ୍ଷେତ୍ରରେ ସଫଳତାର କାରଣ ।

ପଣ୍ଡିତ ଗୋପବନ୍ଧୁ ତାଙ୍କର ବହୁମୁଖୀ କର୍ମଯୋଜନା ମଧ୍ୟରେ ସ୍ଥିର କରିଥିଲେ ଯେ ସେ ଗୋଟିଏ କାରଖାନା ତିଆର କରିବେ ଯେଉଁଠାରୁ କେବଳ ମଣିଷରୁ ପରିପୂର୍ଣ୍ଣ ମଣିଷ ତିଆର ହେବେ । ତାହା ରୂପ ନେଇଥିଲା ସତ୍ୟବାଦୀର ବକୁଳ କୁଞ୍ଜତଳେ । ସେଇ ମଣିଷଗଢା କାରଖାନା ୧୯୦୯ ମସିହା ଅଗଷ୍ଟ ୧୨ ତାରିଖ ଦିନ ଆରମ୍ଭ ହୋଇଥିଲା ମାତ୍ର ୧୯ ଜଣ ଛାତ୍ରଙ୍କୁ ନେଇ ଏକ ମାଧ୍ୟମିକ ସ୍କୁଲରୂପେ । ତାହା ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇଥିଲା ୧୯୧୮ ମସିହାରେ ।

ଠିକ୍ ସେଇ ସମୟରେ ମୟୂରଭଞ୍ଜର ରାଜଦରବାରରେ ସରକାରୀ ଉକିଲଙ୍କ ସ୍ଥାନ ଖାଲି ପଡିଥିଲା । ସେଠିକାର ମହାରାଜା ଥିଲେ ଜଣେ ଅତ୍ୟନ୍ତ ମାତୃଭାଷାପ୍ରେମୀ । ଓଡିଶାରେ ଓଡ଼ିଆଭାଷାର ତଥା ଓଡିଆ ସାହିତ୍ୟର ସୁରକ୍ଷା ପାଇଁ ମୟୂରଭଞ୍ଜର ମହାରାଜାଙ୍କ ଅବଦାନ ଅନେକ ରହିଛି । ସେତେବେଳେ ମହାରାଜା ଥିଲେ ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ । ସେ ଚାହିଁଥିଲେ ଜଣେ ଓଡିଆ ଉକିଲ । ତତ୍‌କାଳୀନ ଓଡିଶାର ବରିଷ୍ଠ ଆଇନଜ୍ଞ ଶ୍ରୀଯୁକ୍ତ ମଧୁସୂଦନ ଦାସଙ୍କ ପରାମର୍ଶକ୍ରମେ ପଣ୍ଡିତ ଗୋପବନ୍ଧୁଙ୍କୁ ସେ ତାଙ୍କ ସଭାରେ ଉକିଲଭାବେ ଗ୍ରହଣ କରିଥିଲେ । ସେ ୧୯୧୦ ମସିହା ଜାନୁୟାରୀ ମାସ ୧୦ ତାରିଖ ଦିନ ମୟୂରଭଞ୍ଜରେ ସରକାରୀ ଉକିଲଭାବେ ଯୋଗ ଦେଇଥିଲେ ।

ଓଡିଆଭାଷା, ସାହିତ୍ୟ ଓ ସଂସ୍କୃତିପ୍ରେମୀ ବାରିପଦା ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ କଟକସ୍ଥ ରେଭେନ୍ସା ମହା-ବିଦ୍ୟାଳୟକୁ ତାଙ୍କର ନାମରେ ନାମିତ କରାଯାଇଛି । ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ ଗୋପବନ୍ଧୁଙ୍କ କର୍ମପ୍ରବଣତା ଓ ଧୀମତ୍ତାରେ ଏତେ ପ୍ରୀତ ହୋଇଥିଲେ ଯେ ତାହାଙ୍କୁ ଜଣେ ପରମବନ୍ଧୁ ତଥା ଉପଦେଷ୍ଟା ଭାବେ ଗ୍ରହଣ କରିଥିଲେ । ତାହାହିଁ ଥିଲା ଅନ୍ୟତମ କାରଣ ଯେଉଁଥିପାଇଁ ମହାରାଜା ତାହାଙ୍କୁ ରାଜ୍ୟବ୍ୟବସ୍ଥାପକ ସଭା ଓ କାଉନ୍-ସିଲର ସଭ୍ୟଭାବେ ମଧ୍ୟ ନିଯୁକ୍ତ କରିଥିଲେ ।

୧୮୯୨ ମସିହା ଅଗଷ୍ଟ ପନ୍ଦ୍ରଠାରୁ ମୟୂରଭଞ୍ଜରେ ଷ୍ଟେଟ୍ କାଉନ୍‌ସିଲ ଗଠିତ ହୋଇଥିଲା ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ସଭାପତିତ୍ୱରେ । ସେହି ବର୍ଷ ମହାରାଜା ନାବାଳକତା ପରେ ଶାସନଭାର ହାତକୁ ନେଇଥିଲେ ଓ ସେହି ବର୍ଷ ହିଁ ବ୍ରିଟିଶ ପାର୍ଲାମେଣ୍ଟରେ ଭାରତ କାଉନ୍‌ସିଲ ଆଇନ (The India Council Act of 1892) ପାସ୍ ହୋଇଥିଲା । ସେଥିରେ ବ୍ୟବସ୍ଥା ଥିଲା ଯେ ଭାରତୀୟ ବ୍ୟବସ୍ଥାପକ ସଭାରେ ବେସରକାରୀ ସଭ୍ୟସଂଖ୍ୟା ବୃଦ୍ଧି ହୋଇପାରିବ ଏବଂ ବ୍ୟବସ୍ଥାପକ ସଭାର ସଭ୍ୟମାନେ ସରକାରଙ୍କ ବଜେଟ ଉପରେ ଆଲୋଚନା କରିପାରିବେ । ସେଇ ଆଦର୍ଶର ଅନୁକରଣରେ ବାରିପଦା ମହାରାଜା ତାଙ୍କ କାଉନ୍‌ସିଲ ଗଠନ କରିବା ପାଇଁ ପଦକ୍ଷେପ ନେଇଥିଲେ । ସେ କାଉନ୍‌ସିଲ ଗଠନ କରିବାର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା ୧୮୮୨ ମସିହାରେ କଲିକତା ହାଇକୋର୍ଟର ଫୁଲ୍ ବେଞ୍ଚ ନିଷ୍ପତ୍ତି କରିଥିଲେ ଯେ ମୟୂରଭଞ୍ଜ ବ୍ରିଟିଶ ଭାରତର ଅନ୍ତର୍ଭୁକ୍ତ ନୁହେଁ ଏବଂ ସେହି କାରଣରୁ ସେଠାରେ ବ୍ରିଟିଶ ଭାରତୀୟ ଆଇନ ପ୍ରଚଳନ ହେବା ଆଦୌ ସଙ୍ଗତ ନୁହେଁ । କିନ୍ତୁ ଯେତେବେଳେ ୧୮୮୨ ମସିହାରେ ମୟୂରଭଞ୍ଜର ଶାସନଭାର ନାବାଳକୀ ଶାସନକୁ କେନ୍ଦ୍ରକରି ବ୍ରିଟିଶ ସରକାରଙ୍କ ଅଧୀନକୁ ଗଲା, ସେଠାରେ ବ୍ରିଟିଶ ଆଇନ ପ୍ରଚଳିତ ହୋଇଥିଲା । ତେବେ ୧୮୯୨ରେ ମହାରାଜା ଶ୍ରୀରାମଚନ୍ଦ୍ର ଦେଓ ଶାସନଭାର ଗ୍ରହଣ କରିବା ପରେ ବୁଝିଥିଲେ ତାଙ୍କର ଆଇନକାନୁନ୍ ତଥା ଶାସନ ପଦ୍ଧତି ଅଲଗା କରିବେ । ସେଥିପାଇଁ ସେଇ ଷ୍ଟେଟ୍ କାଉନ୍‌ସିଲର ଗଠନ ।

ମୟୂରଭଞ୍ଜ ଷ୍ଟେଟ୍ କାଉନ୍‌ସିଲ ବା ବ୍ୟବସ୍ଥାପକ ସଭାରେ ଯେଉଁସବୁ ଆଲୋଚନାମାନ ହେଉଥିଲା ତାହାସବୁ ଏକ ମୋଟା ଚମଡ଼ା ବନ୍ଧେଇ ଖାତାରେ ଲିପିବଦ୍ଧ ହୋଇ ରହୁଥିଲା । ପ୍ରତ୍ୟେକ ସଭାର ବିବରଣୀ ଶେଷରେ ମହାରାଜା ସ୍ୱାକ୍ଷର କରୁଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସ ବାରିପଦାରେ ସ୍ୱଳ୍ପ ଅବସ୍ଥାନ କାଳରେ ବ୍ୟବସ୍ଥାପକ ସଭାର ମାତ୍ର ତିନୋଟି ଅଧିବେଶନ ଅନୁଷ୍ଠିତ ହୋଇଥିଲା

ଏବଂ ପ୍ରତ୍ୟେକ ଅଧିବେଶନରେ ମହାରାଜାଙ୍କଦ୍ୱାରା ମନୋନୀତ ଅତିରିକ୍ତ ସଭ୍ୟ ଗୋପବନ୍ଧୁ ଆଲୋଚନାଗୁଡ଼ିକରେ ସକ୍ରିୟ ଅଂଶ ଗ୍ରହଣ କରି ନିର୍ଭୀକ ମତ ପ୍ରଦାନ କରୁଥିଲେ । ସେ ବାରିପଦାରେ ନିଯୁକ୍ତ ହେବାର ପ୍ରାୟ ଏକମାସ ପରେ ପ୍ରଥମ ବୈଠକ ଅନୁଷ୍ଠିତ ହୋଇଥିଲା ୧୯୧୦ ମସିହା ଫେବୃୟାରୀ ମାସ ୨୫ ତାରିଖ ଅପରାହ୍ଣ ୪ଟା ବେଳେ । ଏହି ଅଧିବେଶନରେ ଅସ୍ତ୍ର ଆଇନ ( Arms Regulation ) ଏବଂ କୋର୍ଟ ଫି ଆଇନ ( Court fees Act ) ପ୍ରଚଳନର ପ୍ରସ୍ତାବ ଆଣିଥିଲେ ହରିଦାସ ବୋଷ-ଉପଦେଷ୍ଟା ସଭ୍ୟ ତଥା ଷ୍ଟେଟ୍ ଜଜ୍ । ବିଭିନ୍ନ ଆଲୋଚନା ପରେ ଉଭୟ ବିଲ୍ ଆଇନରେ ପରିଣତ ହୋଇ ଯାଇଥିଲା ।

ପୂର୍ବରୁ ନିର୍ଦ୍ଧାରିତ ହୋଇଥିଲା ଯେ ସେହି ଅଧିବେଶନରେ ଆଉ ଗୋଟିଏ ବିଲ୍ ଦାଖଲ ଖାରଜ (Mutation Regulation) ଉପରେ ଆଣାଯିବ । କିନ୍ତୁ ହରିଦାସ ବୋଷ ତାହା ପୁଙ୍ଖାନୁପୁଙ୍ଖ ଭାବେ ବିଚାର କରିବା ପାଇଁ ଗୋଟିଏ କମିଟି କରି ଆସନ୍ତା ଅଧିବେଶନରେ ତାକୁ ଆଇନରେ ପରିଣତ କରିବା ଲାଗି ମତପୋଷଣ କରିଥିଲେ । ତେଣୁ ସ୍ୱୟଂ ମହାରାଜା, ଦିୱାନ୍ ଓ ଗୋପବନ୍ଧୁ ଦାସଙ୍କୁ ନେଇ ଏକ ସିଲେକ୍ଟ କମିଟି ଗଠନ କରାଯାଇଥିଲା ଓ ଆସନ୍ତା ଅଧିବେଶନ ପୂର୍ବରୁ ତାହା ଉପରେ ରିପୋର୍ଟ ଦେବାପାଇଁ ସମୟ ନିର୍ଦ୍ଧାରଣ କରାଯାଇଥିଲା ।

ତତ୍ପରେ ଦ୍ୱିତୀୟ ବୈଠକ ଅନୁଷ୍ଠିତ ହୋଇଥିଲା ୭ ଅପ୍ରେଲ ୧୯୧୦ ମସିହାରେ । ଉଦ୍ଦେଶ୍ୟ ଥିଲା ୧୯୧୦-୧୧ର ବଜେଟ ଆଲୋଚନା ସଙ୍ଗେ ସଙ୍ଗେ ଦାଖଲ ଖାରଜ ଆଇନ ଉପରେ ସିଲେକ୍ଟ କମିଟିର ରିପୋର୍ଟ ଆଲୋଚନା କରିବା । ତାହା ହୋଇଥିଲା ଓ ଆଇନରେ ପରିଣତ ମଧ୍ୟ ହୋଇଥିଲା । ସଭାପତିଙ୍କ ବଜେଟ୍ ଭାଷଣ ଉପରେ କୌଣସି ଆଲୋଚନା ହୋଇନଥିଲା ।

ପଣ୍ଡିତ ଗୋପବନ୍ଧୁଙ୍କ ବାରିପଦା ଅବସ୍ଥାନ କାଳରେ ବରଂ ସେଠାରେ ନିଯୁକ୍ତ ହେବାର କେତେ ମାସ ପରେ ୧୯୧୦ ମଇ ମାସରେ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓ ପୃଥିବୀ ଭ୍ରମଣରେ ବାହାରିଥିଲେ ।

ମହାରାଜା ସେତେବେଳେ ତାଙ୍କ ରାଜ୍ୟରେ ଏତେ ଲୋକପ୍ରିୟ ହୋଇଥିଲେ ଯେ ତାହାଙ୍କ ନିକଟରୁ ଅର୍ଦ୍ଧବର୍ଷ ଦୂରେଇ ରହିବା ଲାଗି ପ୍ରଜାମାନେ ଆଦୌ ପ୍ରସ୍ତୁତ ନଥିଲେ । ସେଥିପାଇଁ ପୃଥିବୀ ଭ୍ରମଣରେ ଯିବା ସମ୍ବାଦରେ ସେମାନେ ବିଚଳିତ ହୋଇପଡିଥିଲେ । ପଣ୍ଡିତ ପରମାନନ୍ଦ ଆଚାର୍ଯ୍ୟଙ୍କ ଭାଷାରେ "ଗୋପବନ୍ଧୁଙ୍କ ବାରିପଦା ଅବସ୍ଥିତିର କେତେ ମାସ ପରେ ମହାରାଜା ଶ୍ରୀ ରାମଚନ୍ଦ୍ର ପୃଥିବୀ ଭ୍ରମଣ ପାଇଁ ୧୯୧୦ ମେ ମାସରେ ବାହାରିଲେ । ତାଙ୍କର ଏହି ପ୍ରସ୍ତାବରେ ଅନେକ ଲୋକ ବିଚଳିତ ହୋଇପଡ଼ିଥିଲେ କିନ୍ତୁ ଗୋପବନ୍ଧୁ ତାଙ୍କୁ ଏ ବିଷୟରେ ଉତ୍ସାହିତ କରିଥିଲେ । ମହାରାଜାଙ୍କ ଯାତ୍ରାପୂର୍ବରୁ ବାରିପଦାରେ ଗୋଟିଏ ସଭା ହୋଇଥିଲା । X × ଏହି ସଭା ଉପଲକ୍ଷେ ଗୋପବନ୍ଧୁ ଯେଉଁ ସଙ୍ଗୀତ ରଚନା କରିଥିଲେ, ତାହା ସମସ୍ତଙ୍କର ବଡ଼ ମର୍ମସ୍ପର୍ଶୀ ହୋଇଥିଲା । X X ଏହି ସଙ୍ଗୀତ ବୋଲାହେଲାବେଳେ ସମସ୍ତଙ୍କର ଚକ୍ଷୁ ଅଶ୍ରୁ ପରିପୂର୍ଣ୍ଣ ହୋଇଥିଲା । (୩)

କାଉନ୍‌ସିଲର ତୃତୀୟ ବୈଠକ ବସିଥିଲା ସେଇ ଅପ୍ରେଲ ସାତ, ୧୯୧୧ ମସିହାରେ । ସେଥିରେ ପ୍ରଥମେ ସଭାପତି ବଜେଟ ଭାଷଣ ଦେଇଥିଲେ । ତା ପରେ ଗୋପବନ୍ଧୁ ତଥା ଅନ୍ୟ ସଭ୍ୟମାନେ ତାଙ୍କର ମନ୍ତବ୍ୟ ପ୍ରଦାନ କରିଥିଲେ । ମୟୂରଭଞ୍ଜରେ କପରି ଶିକ୍ଷାର ବିଶେଷ ପ୍ରସାର ହେବ ଏବଂ ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ହେବ ସେ ସମ୍ପର୍କରେ ଗୋପବନ୍ଧୁ ବାବୁ ତାଙ୍କର ମନ୍ତବ୍ୟ ପ୍ରକାଶ କରିଥିଲେ । ଶିକ୍ଷା ସମ୍ପର୍କରେ ଆଲୋଚନା କରିବାକୁ ଯାଇ ବିଭିନ୍ନ ଦେଶୀୟ ରାଜ୍ୟ, ଯଥା—ବରୋଦା ଏବଂ ଢେଙ୍କାନାଳ ପ୍ରଭୃତି ସହିତ ବାରିପଦାକୁ ତୁଳନା କରିଥିଲେ । ତାଙ୍କର ମତଥିଲା ଶିକ୍ଷା ବାବଦରେ କରାଯିବାକୁ ଥିବା ସମୁଦାୟ ଖର୍ଚ୍ଚ ମୋଟ ଆୟର ୩.୫୦/° ନହୋଇ ବରୋଦା ରାଜ୍ୟର ଭଳି ୧୦୦/° ହେବା ଉଚିତ । ଗୋପବନ୍ଧୁ ଦାସ ସେହି ସଭାରେ ଯାହା କହିଥିଲେ ତାର ସାରାଂଶ ବିବରଣୀ ଖାତାରେ ଯେପରି ଭାବରେ ଲିପିବଦ୍ଧ ଅଛି ଏବଂ ତାହା ପରମାନନ୍ଦ ଆଚାର୍ଯ୍ୟ ଯେପରି ଭାବରେ ଉଦ୍ଧାର କରିଛନ୍ତି ସେଥିର ଗୋଟିଏ ଅଂଶ ହେଲା ।

(୩) ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା ସମାଜ ୧୯୫୩, ଜାନୁୟାରୀ ୧୧

"........So closely connected with the moral and material well-being of the people sufficient attention, he said, had not been paid to them. It Tukeyo, London and Newyork which the chief visited they made education their watchward. It is the foundation of the good Government. Though he admitted the progress in education was already, but it was not what was expected from a wise and good ruler—grown wiser by his foreign travel's. He pointed out the incidence of expenditure on education on the estimated receipts was 5% This figure compared with Dhenkanal and Baroda and remarked that he did compare favourably with either. Though Mayurbhanj is Baroda of Orissa respects he said, it was not in respect of education. In Baroda the percentage of expenditure on education was 10% .........." (4)

"ଦେଶର ଶିକ୍ଷା ପ୍ରସାର ଓ ସ୍ୱାସ୍ଥ୍ୟରକ୍ଷା ପ୍ରତି ତାଙ୍କର ବିଶେଷ ଦୃଷ୍ଟି ଥିଲା । ମୟୂରଭଞ୍ଜ ରାଜ୍ୟ ସଦୃଶ ଏକ କ୍ଷୁଦ୍ର ପରିସରରେ ଗୋପବନ୍ଧୁ ଯେଉଁ ଆଦର୍ଶ ଦେଖାଇଥିଲେ, ତାହା ତାଙ୍କର ଭବିଷ୍ୟତ୍ ଜୀବନରେ ବିରାଟ ଆକାରରେ ବହୁମୁଖୀ ହୋଇଥିଲା ।"

ଗୋପବନ୍ଧୁଙ୍କ ଜଣେ ସହପାଠୀ ଓ ସହକର୍ମୀ, ଓଡ଼ିଆ ଜାତିର ଜନକ କୁଳବୃଦ୍ଧ ମଧୁସୂଦନଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀର ବେତନଭୋଗୀ ପ୍ରଚାରକ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ ଭାଷାରେ

(୪) ଗୋପବନ୍ଧୁ ଶ୍ରାଦ୍ଧସଂଖ୍ୟା ସମାଜ—୧୯୬୨

"ମହାରାଜା ଗୋପବନ୍ଧୁଙ୍କ ସାହଚର୍ଯ୍ୟରେ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଥିଲେ । ରାଜ୍ୟର ବଜେଟ୍ ଆଲୋଚନା ବେଳେ ଗୋପବନ୍ଧୁ ଶିକ୍ଷା ବିଭାଗର ବ୍ୟୟ ବାହୁଲ୍ୟ ପାଇଁ ମହାରାଜାଙ୍କୁ ସଭାରେ ଅନୁରୋଧ କରିବାରୁ ମହାରାଜା ଉତ୍ତର ଦେଲେ ଗୋପବନ୍ଧୁ ବାବୁ କେବଳ ଶିକ୍ଷା ବିଭାଗର ଓକିଲାତି ନେଇଛନ୍ତି, ମାତ୍ର ମୋତେ ସବୁ ବିଭାଗ ପ୍ରତି ଦୃଷ୍ଟି ଦେବାକୁ ହେବ ।" (୫)



(୫) 'ଯୁଗପୁରୁଷ ଗୋପବନ୍ଧୁ' ସଂ--ସୂର୍ଯ୍ୟନାରାୟଣ ଦାସ, ପୃଷ୍ଠା—୧୦୯

॥ ପାଞ୍ଚ ॥

# ବକୁଳକୁଞ୍ଜ ଛୁଇଁ ଅନା ଚରୁତଳେ

ପଣ୍ଡିତ ଗୋପବନ୍ଧୁଙ୍କ ଐକାନ୍ତିକ କାମନା ଥିଲା ଆଗାମୀ କାଳର ଯୁବସମାଜ ତଥା ବର୍ତ୍ତମାନର ଗୃହସ୍ଥ ଦେଶପ୍ରେମରେ ଉଦ୍‌ବୁଦ୍ଧ ହେଉ, ନିଜ ଜାତି ପ୍ରତି ମାୟା ମମତା ନେଇ ବଡ଼ ହେଉ । ତାହାହିଁ ହେବ ଜାତିକୁ ବଞ୍ଚାଇ ରଖିବା ଲାଗି ପ୍ରକୃଷ୍ଟ ଉଦ୍ୟମ । ତଦ୍ ବ୍ୟତୀତ ସମାଜରେ କୌଣସି ପ୍ରକାର ଆନ୍ଦୋଳନ ସୃଷ୍ଟି ହୋଇପାରିବ ନାହିଁ କି ଦେଶରୁ ପରାଧୀନତାର ଶୃଙ୍ଖଳ କଟିବା ସମ୍ଭବ ହେବନାହିଁ ।

ଏହି ଜାତୀୟ ଚେତନାକୁ ପ୍ରକୃତ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କରିବା ପାଇଁ ସେ ସତ୍ୟବାଦୀ ବନବିଦ୍ୟାଳୟର ପରିକଳ୍ପନା ଓ ପ୍ରତିଷ୍ଠା କରିଥିଲେ । ବିଦ୍ୟାଳୟର ଉଦ୍ଦେଶ୍ୟ ସମ୍ପର୍କରେ ସେ ପଣ୍ଡିତ ଗୋଦାବରୀଶଙ୍କୁ କହିଥିଲେ "ସ୍ୱାଧୀନତା ପାଇଁ ଆମେ ଆଜି ଆମେରିକା ପରି ଯୁଦ୍ଧ କରିବା ନାହିଁ । କିନ୍ତୁ ଏପରି ଲୋକସମାଜ ଗଢ଼ିପାରିବା ଯାହାକୁ ଶାସନ କରିବା ପଶୁବଳ ଉପରେ ନିର୍ଭର କରୁଥିବା ଇଂରେଜ ପକ୍ଷେ ଅସମ୍ଭବ ହେବ । କିନ୍ତୁ ଏ ଲୋକସମାଜ ଗଢ଼ିବ କିଏ ? ଟଙ୍କା ମନୁଷ୍ୟ ତିଆରି କରୁଛି । ମନୁଷ୍ୟ ଲୋଡ଼ିଲେ ପାଇବ । ପ୍ରଧାନ ଦରକାର ଶିକ୍ଷକ, ଯେଉଁମାନେ ନିଜର ସ୍ୱାର୍ଥରେ ବଳି ଦେଇ ସତ୍ୟର ପ୍ରଚାର ନିମନ୍ତେ ଦେଶୋଦ୍ଧାରକୁ ନିଜର ବ୍ରତ କରି ଦେଶରେ ଲକ୍ଷ ଲକ୍ଷ କୋଟି କୋଟି ମାନବ ଗଢ଼ିଯିବେ । କୁମ୍ଭାର ମାଟିପିଣ୍ଡୁଳା ଧରି ଦେବପ୍ରତିମା ଗଢ଼ୁଛି । ମନୁଷ୍ୟ ପିଣ୍ଡରୁ ଶିକ୍ଷକମାନଙ୍କୁ ପ୍ରକୃତ ମନୁଷ୍ୟ ଗଢ଼ିବାକୁ ହେବ । ଏ କାର୍ଯ୍ୟ ଅତି କଠିନ । କିନ୍ତୁ ଏହାଛଡ଼ା ଉପାୟ ନାହିଁ । ଏଥିପାଇଁ ଏ ସତ୍ୟବାଦୀ ବିଦ୍ୟାଳୟର ପରିକଳ୍ପନା ।" (୧)

---

(୧) ସତ୍ୟବାଦୀଯୁଗ (୧୯୭୦)—ଶ୍ରୀ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ, ପୃ. ୧୮

ଅନ୍ୟ ଭାଷାରେ କହିବାକୁ ଗଲେ ଦେଶରୁ ପରାଧୀନତାର ଘନାଂଧକାରକୁ ଦୂରୀଭୂତ କରିବାପାଇଁ "ଏକ ମଣିଷ ଗଢ଼ା କାରଖାନା" —ସତ୍ୟବାଦୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ତେଣୁ ସେହି ବିଦ୍ୟାଳୟ ଥିଲା ପଣ୍ଡିତ ଗୋପବଂଧୁଙ୍କ ଚିନ୍ତାଧାରାର ପ୍ରାଣକେନ୍ଦ୍ର—ସାଧନାର ପ୍ରଧାନ ପୀଠସ୍ଥଳ ।

ଗୋପବଂଧୁ ଯେଉଁସବୁ ଯୋଜନା କରିବାଲାଗି କଳ୍ପନା କରୁଥିଲେ ତାର ଅଂଶୀଦାର କରୁଥିଲେ ତାଙ୍କ ଭଳି ସମଚିନ୍ତାଧାରାସଂପନ୍ନ ତାଙ୍କର ସହକର୍ମୀମାନଙ୍କୁ । ସେମାନଙ୍କ ମଧ୍ୟରେ ପ୍ରଥମ ଥିଲେ ପଣ୍ଡିତ ନୀଳକଣ୍ଠ । ସେମାନେ କିପରି କାର୍ଯ୍ୟପନ୍ଥା ଗ୍ରହଣ କରିବେ ସେଥିପାଇଁ ଅନେକ କଳ୍ପନା ଜଳ୍ପନା କରାଯାଇ ଶେଷ ସିଦ୍ଧାନ୍ତ ହୋଇଥିଲା ଯେ ସେମାନେ ଏକ ବିଦ୍ୟାଳୟ ସ୍ଥାପନ କରିବେ । ସେହି ସମୟରେ ତାଙ୍କର ଚକ୍ଷୁ ସାମନାରେ ଥିଲା ପୁନାର ଫର୍‌ଗୁସେନ କଲେଜ । କେବଳ ସେତିକି ନୁହ ଇଂଲଣ୍ଡରେ ତଥା ଇଉରୋପରେ ପ୍ରତିଷ୍ଠା ଲାଭ କରିଥିବା ଇଟନ୍, ହାରୋ, ରୁଗ୍‌ବି ପରି ପବ୍ଲିକ୍ ସ୍କୁଲଗୁଡ଼ିକ ସଂବଂଧରେ ମଧ୍ୟ ଗୋପବଂଧୁ ଓ ତାଙ୍କ ଦଳ ଅବହିତ ଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ "ବିଶେଷତଃ ରୁଗ୍‌ବି ସମ୍ପର୍କରେ ଏଡୁଇନ୍ ଆରନଲ୍ଡଙ୍କ କଥା ଆମେ ଖୁବ୍ କଥାବାର୍ତ୍ତା ହେଉଥିଲୁ । ତାଙ୍କ ଲାଇଟ୍ ଅଫ ଏସିଆ (Light of Asia) ନାମକ ପୁସ୍ତକକୁ ସେତେବେଳେକୁ ବଙ୍ଗର ନବୀନସେନ୍ "ଅମିତାଭ" ନାମରେ ବଙ୍ଗଳାରେ ପ୍ରକାଶ କରିଥାନ୍ତି । ଏସବୁ ଆମ ତରୁଣ ପ୍ରାଣରେ କି ପ୍ରଭାବ ପକାଇଥିଲା ତାହାର ବିଶ୍ଳେଷଣ ଭାଷାରେ ପ୍ରକାଶ ଅସମ୍ଭବ । ଏ ସମସ୍ତ ପ୍ରଭାବ ମୂଳରେ ଥିଲେ ଗୋପବଂଧୁ । ତାଙ୍କର କିନ୍ତୁ ପ୍ରଭାବର ପୀଠଥିଲେ ଓଡ଼ିଶାର ପୁଣ୍ୟଶ୍ଳୋକ ପଣ୍ଡିତ ହରିହର ଦାସ, ସେ ହେଉଛନ୍ତି ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା । ଏହି କଲେଜକୁ ସେ ଯାହା କଳ୍ପନା କରିଥିଲେ ଓ ସମାଜ ସଂସ୍କାର ଦିଗରେ ତାଙ୍କର ଯେ ପ୍ରେରଣା ଓ ପୂର୍ବଦୃଷ୍ଟି ଥିଲା, କେଜାଣି କିପରି ଗୋପବଂଧୁ ସେଥିରେ ତନ୍ମୟ ଥିଲେ । X X X ଫରଗୁସେନ କଲେଜଠାରୁ ହାରୋ, ଇଟନ, ରୁଗ୍‌ବି ପର୍ଯ୍ୟନ୍ତ ସମସ୍ତଙ୍କୁ ଯେପରି କି

ଆମ୍ଭେମାନେ ସେଇ ହରିହରଙ୍କ କଳ୍ପନା ଓ ଉଦାହରଣ ଭଳି ଦେଖିଥିଲୁ ।” (୨)

ଯେତେବେଳେ ସ୍କୁଲ୍ କରିବା କଥା ସ୍ଥିର ହୋଇଥିଲା ତା'ପରେ ସେଥିପାଇଁ ଉପଯୁକ୍ତ ସ୍ଥାନ ଖୋଜିବାଲାଗି ପ୍ରବଳ ଉଦ୍ୟମ କରାଯାଇଥିଲା । ସମଗ୍ର ଓଡ଼ିଶାର କୌଣସି ସ୍ଥାନ ସେଥିରୁ ବାଦ ପଡ଼ିନଥିଲା । ସବାଶେଷରେ ମଧୁସୂଦନ ରାଓ ପରାମର୍ଶ ଦେଇଥିଲେ ସତ୍ୟବାଦୀର ବକୁଳ ବୃକ୍ଷରାଜି ବନରେ ସ୍କୁଲ ସ୍ଥାପନ କରିବା କଥା ଚିନ୍ତା କରିବା ପାଇଁ । ସେହି ସ୍ଥାନହିଁ ଶେଷରେ ଉପଯୁକ୍ତ ବିବେଚିତ ହୋଇଥିଲା ।

ସତ୍ୟବାଦୀ ସ୍କୁଲର ଶୁଭ ଦିଆଯାଇଥିଲା ୧୯୦୯ ମସିହା ଅଗଷ୍ଟ ୧୨ ତାରିଖ କୁମାର ପୂର୍ଣ୍ଣିମୀ ଦିନ । ତାହା ସେତେବେଳେ ଥିଲା ଏକ ମାଧମିକ ସ୍କୁଲ ଏବଂ ଆରମ୍ଭ ହେବା ସମୟରେ ଛାତ୍ରସଂଖ୍ୟା ଥିଲା ମାତ୍ର ୧୯ ଜଣ । ସ୍କୁଲର ପ୍ରଥମ ପ୍ରଧାନଶିକ୍ଷକ ହିସାବରେ ଯୋଗ ଦେଇଥିଲେ ବିଶ୍ୱନାଥପୁରର ଶ୍ରୀ ଗୋପୀନାଥ ମିଶ୍ର । ପଣ୍ଡିତ ଆର୍ତ୍ତତ୍ରାଣ ଦାସ ମଧ୍ୟ ଯୋଗ ଦେଇଥିଲେ ସଂସ୍କୃତ ପଣ୍ଡିତ ରୂପେ । ତତ୍ପରବର୍ତ୍ତୀକାଳରେ ଦୀର୍ଘଦିନ ଧରି ସ୍କୁଲର ପ୍ରଧାନଶିକ୍ଷକଭାବରେ ଏବଂ ଶୃଙ୍ଖଳିତ ଭାବରେ କାର୍ଯ୍ୟ ପରିଚାଳନା କରିଥିବା ପଣ୍ଡିତ ନୀଳକଣ୍ଠ ସେତେବେଳେ କଟକର ରେଭେନ୍ସା କଲେଜରେ ବି. ଏ. ପରୀକ୍ଷା ଦେଇ ସ୍କୁଲର ଶୁଭ ଉଦ୍‌ଘାଟନ ଉତ୍ସବରେ ଯୋଗ ଦେବାପାଇଁ ନିଜକୁ ଉପଯୁକ୍ତ କରିବା ଲାଗି ସେ ଯାଇଥିଲେ ଏମ୍. ଏ. ପଢ଼ିବା ଉଦ୍ଦେଶ୍ୟରେ ।

ତେବେ ସତ୍ୟବାଦୀ ସ୍କୁଲ ଆରମ୍ଭ ହେବା ବେଳକୁ ପଣ୍ଡିତ ଗୋପବନ୍ଧୁ ଥିଲେ ପୁରୀର ଓକିଲ । ତାର ଖୁବ୍ କମ୍ ଦିନ ପରେ ସେ ବାରିପଦା ଯାତ୍ରା କରିଥିଲେ, ସେଠା ଓଡ଼ିଆପ୍ରେମୀ ମହାରାଜାଙ୍କ ସରକାରୀ ଓକିଲ ହିସାବରେ । କିନ୍ତୁ ଯେତେବେଳେ ୧୯୧୨ ମସିହା ଫେବୃୟାରୀ ୨୨ ତାରିଖରେ ବାରିପଦା ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେଓଙ୍କ

(୨) ଆତ୍ମଜୀବନୀ, ପୃଷ୍ଠା ୧୦୩-୧୦୪

ମୃତ୍ୟୁ ହୋଇଥିଲା ସେତେବେଳେ ତାଙ୍କ ପୁତ୍ର ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଦେଓ ଥିଲେ ନାବାଳକ । ତେଣୁ ସ୍ୱଭାବତଃ ବାରିପଦା ଜମିଦାରୀର ଶାସନ ଦାୟିତ୍ୱ ଇଂରେଜ ସରକାର ନିଜ ହାତକୁ ନେଇଥିଲେ । ଇଂରେଜ ସରକାର ରାଜ୍ୟର ଶାସନ ନିଜ ହାତକୁ ନେବା ପରେ ପରେ ସେଠାରୁ ସରକାରୀ ଓକିଲଙ୍କ ଚାକରୀ ଉଠାଇ ଦେଇଥିଲେ । ପରିଣାମ ସ୍ୱରୂପ ଉତ୍କଳମଣି ସେ ସ୍ଥାନ ଛାଡ଼ି ପୁନଶ୍ଚ ତାଙ୍କ ପୁରାତନ କର୍ମପୀଠ କଟକ ଚାଲିଆସି ପୁଣି ସେ ଓକିଲାତି ଆରମ୍ଭ କରି ଦେଇଥିଲେ ।

ଇତିମଧ୍ୟରେ ପଣ୍ଡିତ ନୀଳକଣ୍ଠ କଲିକତା ବିଶ୍ୱବିଦ୍ୟାଳୟରୁ ଏମ. ଏ. ପାସ କରି ସତ୍ୟବାଦୀ ବିଦ୍ୟାଳୟରେ ଯୋଗ ଦେଇଥିଲେ ୧୯୧୧ ମସିହାରେ । ତା ପରେ ପରେ ଯୋଗ ଦେଇଥିଲେ ଆଚାର୍ଯ୍ୟ ହରିହର ୧୯୧୨ ମସିହାରେ । ପଣ୍ଡିତ ଗୋଦାବରୀଶ ଓ ପଣ୍ଡିତ କୃପାସିନ୍ଧୁ ଯୋଗ ଦେଇଥିଲେ ଯଥାକ୍ରମେ ୧୯୧୩ ଓ ୧୯୧୪ ମସିହାରେ । ଗୋପବନ୍ଧୁ ବାରିପଦା ଥିବା ସମୟରେ ହିଁ ସତ୍ୟବାଦୀ ସ୍କୁଲରେ ଏକ ସ୍ମରଣୀୟ ଘଟଣା—ଦୁର୍ଘଟଣା ଘଟିଯାଇଥିଲା ତାହାଥିଲା ସତ୍ୟବାଦୀ ସ୍କୁଲର ଘରପୋଡ଼ି । ସେ ଦିନ ଥିଲା ୧୯୧୨ ମସିହା ମାର୍ଚ୍ଚ ୧୨ ତାରିଖ ।

ସେତେବେଳେ ସତ୍ୟବାଦୀର ଘରଗୁଡ଼ିକ ଚାଳଘର ଥିଲା । ସେଠାରେ ଏକ ବଡ଼ ଧରଣର ଲାଇବ୍ରେରୀ ସଂଗଠିତ ହୋଇଥିଲା ଉଦ୍ୟୋକ୍ତାମାନଙ୍କ ଅକ୍ଳାନ୍ତ ପରିଶ୍ରମରେ ପରିଣାମ ସ୍ୱରୂପ । ବ୍ୟକ୍ତିଗତ ଉଦ୍ୟମରେ ବିଭିନ୍ନ ଲୋକଙ୍କଠାରୁ ଚାନ୍ଦାଭେଦା କରି ସେଇ ପାଠାଗାରର ଗଠନ କରାଯାଇଥିଲା । ସେହି ଲାଇବ୍ରେରୀ ପାଇଁ ବିଭିନ୍ନ ବ୍ୟକ୍ତିଙ୍କ ନିକଟରୁ ପୁସ୍ତକମାନ ସଂଗ୍ରହ କରାଯାଇଥିଲା ମଧ୍ୟ । ସେତେବେଳେ ତାହାଥିଲା ଏକ ଉନ୍ନତ, ସୁଗଠିତ ପାଠାଗାର ।

ସେଦିନ ଯଥାରୀତି ସକାଳବେଳା ସ୍କୁଲକାର୍ଯ୍ୟ ପରିଚାଳିତ ହୋଇଥିଲା । ତା ପରେ ଉପରବେଳା କେତେକ ଈର୍ଷାପରାୟଣ ଲୋକ ସ୍କୁଲ ଚାଳଘରେ ଅଗ୍ନି ସଂଯୋଗ କରିଥିଲେ । ଲାଇବ୍ରେରୀର କଷ୍ଟାର୍ଜିତ

ପୁସ୍ତକପତ୍ର ସହିତ, ଅଳ୍ପ କେତେଖଣ୍ଡ ଟେବୁଲ ଓ ବେଞ୍ଚ ପ୍ରଭୃତି ସବୁ ଧ୍ୱଂସ ହୋଇଯାଇଥିଲା ।

ଗୋପବନ୍ଧୁଙ୍କ ମଣିଷଗଢ଼ା କାରଖାନା-ସତ୍ୟବାଦୀ ବିଦ୍ୟାଳୟକୁ ଯୋଡ଼ ପକାଇବା ମୂଳରେ ଥିଲା ସ୍କୁଲରେ ପ୍ରଚଳିତ ହେଉଥିବା ସାମାଜିକ ସଂସ୍କାରବାଦୀ କାର୍ଯ୍ୟକ୍ରମ । ସେତେବେଳକୁ ମାଇନର ସ୍କୁଲ ସଙ୍ଗେ ସଙ୍ଗେ ହାଇସ୍କୁଲର ଅଷ୍ଟମ ଶ୍ରେଣୀ ମଧ୍ୟ ଆରମ୍ଭ ହୋଇଯାଇଥିଲା । ହାଇସ୍କୁଲ ସମ୍ପୂର୍ଣ୍ଣ ରୂପେ ହୋଇନଥିବାରୁ ସ୍କୁଲର ମୁଖ୍ୟ ନୀଳକଣ୍ଠ ପ୍ରଧାନଶିକ୍ଷକ ବଦଳରେ ସୁପରିନ୍‌ଟେଣ୍ଡେଣ୍ଟ ବା ପରିଚାଳକ ଭାବେ ପରିଚିତ ଥିଲେ । ସେ ଥିଲେ ଜଣେ ସାମାଜିକ ସଂସ୍କାରବାଦୀ । ତାଙ୍କଠାରୁ ପ୍ରଥମେ ଆରମ୍ଭ ହୋଇଥିଲା "ବାଳ" ଆନ୍ଦୋଳନ ।

ସେତିକିବେଳର ପ୍ରଚଳିତ ପରମ୍ପରା ଅନୁଯାୟୀ ବ୍ରାହ୍ମଣମାନଙ୍କ ବାଳ ଓ ଦାଢ଼ୀ ଉଭୟ ରଖିବାକୁ ହେଉଥିଲା କିମ୍ବା ଉଭୟ ସଫା କରିବାକୁ ହେଉଥିଲା । ଯୁବକ ନୀଳକଣ୍ଠ ମନେ କରିଥିଲେ ବାଳ ରଖିବା ବା ବାହାର କରିବା ସହିତ ଦାଢ଼ୀ ରଖିବା କିମ୍ବା ବାହାର କରିବାର କୌଣସି ସମ୍ପର୍କ ନାହିଁ । ବିଶେଷତଃ ସେତେବେଳେ ପଣ୍ଡିତ ବ୍ରାହ୍ମଣମାନେ ବାଳ ରଖିବା ଥିଲା ସାମାଜିକ ନୀତିବିରୁଦ୍ଧ ଏବଂ ପ୍ରଚଳିତ ସାମାଜିକ ପରମ୍ପରାର କ୍ଷତିକାରକ ମଧ୍ୟ । କିନ୍ତୁ ପଣ୍ଡିତ ନୀଳକଣ୍ଠ କଲିକତାରେ ପଢ଼ିବାବେଳଠାରୁ ହିଁ ଦାଢ଼ୀ କାଟି ବାଳ ରଖିବା ଆରମ୍ଭ କରିଥିଲେ ଏବଂ ତାଙ୍କ ଦ୍ୱାରେ ଯୁବକମାନଙ୍କୁ ସେହି ଦିଗରେ ପ୍ରବର୍ତ୍ତିତ ମଧ୍ୟ କରିଥିଲେ । ଯେ ପ୍ରକାର କାର୍ଯ୍ୟକ୍ରମ ସତ୍ୟବାଦୀରେ ଯୋଗଦେବା ପରେ ମଧ୍ୟ ଚାଲୁ ରହିଥିଲା ।

ତାହାଥିଲା ସେତେବେଳେ ସମାଜରୁ ଜାତିଭେଦ ପ୍ରଥା ବିଲୁପ୍ତ କରିଦେବା ପାଇଁ ଏକ ଆନ୍ଦୋଳନ—ବାଳ ଆନ୍ଦୋଳନ । ମୋ' ବାଳ ନାମରେ ଏକ ସଂସ୍କାରବାଦୀ ପ୍ରବନ୍ଧ ମଧ୍ୟ ସେତେବେଳେ ନୀଳକଣ୍ଠ ଲେଖିଥିଲେ ଯାହା ତତ୍କାଳୀନ ପଣ୍ଡିତ ସମାଜରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା ।

ସତ୍ୟବାଦୀ ବିଦ୍ୟାଳୟକୁ ପୋଡ଼ିଦେବା ମୂଳରେ ଆଉ ଗୋଟିଏ ବଡ଼ ସଂସ୍କାରବାଦୀ କାର୍ଯ୍ୟକ୍ରମ ଥିଲା ତାହାହେଲା ବିଦ୍ୟାଳୟର ଅନ୍ତେ-ବାସୀମାନଙ୍କ ମଧ୍ୟରେ ପଂକ୍ତି ଭୋଜନ । ବିଦ୍ୟାଳୟ ପ୍ରତିଷ୍ଠିତ ହେବାର ମାତ୍ର ତିନୋଟି ବର୍ଷ ମଧ୍ୟରେ ତାର ଖ୍ୟାତି ଗୁରୁଆରେ ପରିବ୍ୟାପ୍ତ ହୋଇ ଯାଇଥିଲା ଏବଂ ଦୂରଦୂରାନ୍ତରରୁ ବହୁ ଛାତ୍ର ଅଧ୍ୟୟନ କରିବା ସକାଶେ ସେଠାକୁ ଆସୁଥିଲେ । ସେମାନଙ୍କ ପାଇଁ ଛାତ୍ରାବାସର ବ୍ୟବସ୍ଥା ହୋଇଥିଲା । ସେଠାରେ ଛାତ୍ରମାନେ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଗୋଟିଏ ପଂକ୍ତିରେ ଧାଡ଼ି ବାନ୍ଧି ଭୋଜନ କରିବାର ବ୍ୟବସ୍ଥା ଥିଲା ।

ସତ୍ୟବାଦୀର ଏ ପ୍ରକାର ବ୍ୟବସ୍ଥାରେ ଅତିଷ୍ଠ ହୋଇ ଉଠିଥିଲେ ସେଠାକାର ରକ୍ଷଣଶୀଳ ଜନସାଧାରଣ । ବିଶେଷ କରି ସତ୍ୟବାଦୀ ଥିଲା ରକ୍ଷଣଶୀଳ ବ୍ରାହ୍ମଣମାନଙ୍କ କେନ୍ଦ୍ରସ୍ଥଳୀ । ଥରେ ବ୍ରାହ୍ମଣମାନେ ନୀଳକଣ୍ଠଙ୍କ ନିକଟକୁ ଯାଇ ସେମାନଙ୍କ ଆପତ୍ତି ଜଣାଇ-ଥିଲେ "ବ୍ରାହ୍ମଣ ଓ ଅବ୍ରାହ୍ମଣମାନଙ୍କ ପାଇଁ ଅଲଗା ଅଲଗା ଭୋଜନ ବ୍ୟବସ୍ଥା କର । ତା ନହେଲେ ଲୋକଙ୍କୁ ଅସହ୍ୟ ହେଉଛି ।" ଏଥିରେ ନୀଳକଣ୍ଠଙ୍କ ଉତ୍ତର ଥିଲା "କୁଳଗୃହର ସମସ୍ତ ଅନ୍ତେବାସୀଙ୍କର ମୁଁ କୁଳପତି । ସୁବିଧା ଥିଲେ ମୋର ପତ୍ନୀ ନିଜ ପୁତ୍ରରୂପେ ସେମାନଙ୍କୁ ରାନ୍ଧି ଖୋଇବାକୁ ଦିଅନ୍ତା । ମୁଁ ଏଇ ପୁତ୍ରମାନଂକର ମଧ୍ୟରେ ବର୍ଣ୍ଣ, ଧର୍ମ, ଭେଦ କରିପାରିବି ନାହିଁ, କ୍ଷମା କରନ୍ତୁ ।"

ଏ ପ୍ରକାର ଉତ୍ତରରେ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ଉଠିଥିଲେ ସେଇ ରକ୍ଷଣଶୀଳ ଗ୍ରାମବାସୀଗଣ । ସେମାନେ ମନେ କରିଥିଲେ ସତ୍ୟ-ବାଦୀର ଏ ପ୍ରକାର କାର୍ଯ୍ୟକଳାପ ସମାଜ ବିରୋଧୀ ଏବଂ ସାମାଜିକ ଅଧଃପତନର କାରଣ ଏବଂ ସେ ସମସ୍ତ କାର୍ଯ୍ୟକଳାପର ମୂଳପୀଠ ଥିଲା ସତ୍ୟବାଦୀ । ସେଇ ଦୃଷ୍ଟିରୁ ସେମାନେ ଅନ୍ୟ କୌଣସି ଉପାୟ ନ ଦେଖି ସତ୍ୟବାଦୀ ସଂସ୍କାରବାଦୀମାନଙ୍କ ସାଧନାର ପୀଠସ୍ଥଳକୁ ଧ୍ୱଂସ କରିଦେବା ଉଦ୍ଦେଶ୍ୟରେ ପୋଡ଼ି ପକାଇଥିଲେ । ତାହା ଥିଲା ୧୯୧୩ ମାର୍ଚ୍ଚ ମାସର ଘଟଣା । ସେମାନେ ମନେ କରିଥିଲେ ତାରୁ ପରିଣାମ ସ୍ୱରୂପ

ସେମାନେ ନିଶ୍ଚିତ ଭାବେ ଭାଙ୍ଗି ପଡ଼ିବେ ଏବଂ ସେ ପ୍ରକାର କାର୍ଯ୍ୟ-କଳାପର ସେଇଠି ହିଁ ଇତି ହେବ ।

କିନ୍ତୁ ସତ୍ୟବାଦୀ ଗୋଷ୍ଠୀ ଥିଲେ କାଉଁରିଆ କାଠି । ସେମାନଙ୍କ ଭାଙ୍ଗିଯିବାରେ ଗୌରବ ଥିଲା କିନ୍ତୁ ନଇଁଯିବାରେ ନୁହେଁ । ତେଣୁ ସେଇଦିନ ସାରାରାତି ବିରାଟ ବିରାଟ ଛାମୁଣ୍ଡିଆ ତିଆରି କରିଦେଇଥିଲେ ସମସ୍ତେ—ଛାତ୍ର ଓ ଶିକ୍ଷକ; କାନ୍ଧରେ କାନ୍ଧ ମିଳାଇ । ତା ପରଦିନ ସେଇ ଚିରାଚରିତ ପନ୍ଥାରେ ଅତି ଶୃଙ୍ଖଳିତ ଭାବରେ ଦୈନନ୍ଦିନ କାର୍ଯ୍ୟକ୍ରମ ଚାଲିଥିଲା । ପିଲାମାନେ ଛାମୁଣ୍ଡିଆ ତଳେ ବସି ଅଧ୍ୟୟନ କରିଥିଲେ ।

ବନବିଦ୍ୟାଳୟ ପୋଡ଼ି ସମ୍ବାଦ ପାଇ ଗୋପବନ୍ଧୁ ବାରିପଦାରୁ ଆସି ସତ୍ୟବାଦୀରେ ପହଞ୍ଚିଲେ । ଏତେବଡ଼ ଦୁର୍ଘଟଣା ଘଟିବା ପରେ ମଧ୍ୟ ତାଙ୍କ ମୁହଁରେ ଆଦୌ ବିଷାଦର ଚିହ୍ନବର୍ଣ୍ଣ ନଥିଲା । ସେ ପହଞ୍ଚିବା ପରେ ପରେ "ଶିକ୍ଷକମାନେ ସମସ୍ତେ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାଇଲେ । ସମସ୍ତେ ବିଷଣ୍ଣ; କିନ୍ତୁ ତାଙ୍କ ମୁଖ ସରସ, ପ୍ରଫୁଲ୍ଲ ଓ ସହାସ୍ୟ ଥିଲା । ସେ ଆମ୍ଭମାନଙ୍କୁ ଉତ୍ସାହ ଦେଇ କହିଲେ—"ଏଥିପାଇଁ ଦୁଃଖ କଣ ? ଭଗବାନଙ୍କ ଇଚ୍ଛା ବୋଧହୁଏ ଏ ବିଦ୍ୟାଳୟ ପାଇଁ କୋଠାଘର ହେବ ।" ଏହା ପଣ୍ଡିତ ନୀଳକଣ୍ଠ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଏ ପ୍ରକାର ଅନୁପ୍ରେରଣା ପ୍ରଧାନଶିକ୍ଷକ ନୀଳକଣ୍ଠଙ୍କ ମନ ମଧ୍ୟରେ ଭରି ଦେଇଥିଲା ଅଦମ୍ୟ ଉତ୍ସାହ, ସମସ୍ତ ଶିକ୍ଷକଙ୍କ ମନରେ ସୃଷ୍ଟି କରି ପାରିଥିଲା ଆତ୍ମିକ ଦୃଢ଼ତା ।

ତା'ର ପରକ୍ଷଣରେ ଶିକ୍ଷକମାନେ ଯେ ଯାହାର ଶ୍ରେଣୀକୁ ଯାଇଥିଲେ ସ୍ୱାଭାବିକ ଅଧ୍ୟୟନ କାର୍ଯ୍ୟ ଚାଲୁ ରଖିବା ପାଇଁ । ଗୋପବନ୍ଧୁ ସେଠାରେ ଉପସ୍ଥିତ ହୋଇଥିଲେ ବୋଲି ଦୈନନ୍ଦିନ କାର୍ଯ୍ୟକ୍ରମରେ କୌଣସି ବ୍ୟାଘାତ ସୃଷ୍ଟି ହୋଇ ନଥିଲା ।

ସତକୁ ସତ ସତ୍ୟବାଦୀରେ କୋଠାଘର ତିଆରି ହେବାଲାଗି ସମସ୍ତ ପ୍ରକାର ଆୟୋଜନ ଆରମ୍ଭ ହୋଇଥିଲା । ଯେଉଁ ବନକାନନ

ଘର ରହିଥିଲା ସେଥିରୁ ଅଧାଘର ପିଲାଙ୍କ ରହିବା ଲାଗି ବ୍ୟବହୃତ ହୋଇଥିଲା ଓ ଆଉ ଅନ୍ୟ କୋଠରୀଗୁଡ଼ିକ ସ୍କୁଲରୂପେ ବ୍ୟବହୃତ ହୋଇଥିଲା ।

ହଠାତ୍ ଗୋପବନ୍ଧୁଙ୍କ କଣ ମନେହେଲା ସେ ଗୋଟାଏ ପରାମର୍ଶ ଦେଇଥିଲେ ଯେ ଶ୍ରେଣୀଗୁଡ଼ିକ ମୁକ୍ତ ଆକାଶ ତଳେ କରାଗଲେ ଉତ୍ତମ ହେବ । ସତ୍ୟବାଦୀରେ ଯେଉଁ ସାକ୍ଷୀଗୋପାଳ ମନ୍ଦିର ଅବସ୍ଥିତ ତାର ପଛପଟରେ ସେତେବେଳେ ବକୁଳ, କୁରୀଅନା, ବର, ଅଶ୍ୱତ୍ଥ ଇତ୍ୟାଦି ବୃକ୍ଷ ପରିପୂର୍ଣ୍ଣ ଏକ ନିଘଞ୍ଚ ଉପବନ ଥିଲା ଓ ତାହାକୁ ଲୋକେ କହୁଥିଲେ "ଗୁପ୍ତ ବୃନ୍ଦାବନ" । ସେଠାକାର କୁରୀଅନା କୁଞ୍ଜଗୁଡ଼ିକ ଥିଲା ବାସ୍ତବିକ୍ ଆକର୍ଷଣୀୟ । ଗୋଟିଏ କୁଞ୍ଜ ଓ ଅନ୍ୟ କୁଞ୍ଜ ମଧ୍ୟରେ ବିଶେଷ ସମ୍ପର୍କ ନଥିଲା । ସେଇଠି ଅଧ୍ୟାପନା କାର୍ଯ୍ୟ ଆରମ୍ଭ ହୋଇଥିଲା ।

ସେତେବେଳର ଜଣେ ଛାତ୍ର ଶ୍ରୀ ଚନ୍ଦ୍ରଶେଖର ମିଶ୍ର ତାଂକ ରଚିତ "ସତ୍ୟବାଦୀରେ ସାତ ବର୍ଷ" ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି "ଉପରେ ପ୍ରକାଣ୍ଡ ବଉଳ ଗଛର ଶାଖା ପ୍ରଶାଖା-ପତ୍ର-ପଲ୍ଲବ ପୁଷ୍ପର ଫଳ, ଚତୁର୍ଦ୍ଦିଗରେ କୁରୀଅନା ବାଡ଼ର କାନ୍ଥ ନରେନ୍ଦ୍ର-ଶ୍ୟାମଳସୁନ୍ଦର ଓ ସୁରଭିତ । ମଝି ଅଂଶଟି ସଫା କରାଯାଇ ଇଟା, ଚୂନ ଓ ସିମେଣ୍ଟରେ ଶିକ୍ଷକଙ୍କ ପାଇଁ ଆସନ ଏବଂ ଆଗରେ ଟେବୁଲ୍ ତିଆରି ହେଲା । କଳାପଟାଗୁଡ଼ିକୁ ପ୍ରଧାନ ବୃକ୍ଷର ପ୍ରକାଣ୍ଡ ଗଣ୍ଡିରେ କଣ୍ଟା ବାଡ଼େଇ ଝୁଲେଇ ଦିଆଗଲା । ସେହିସବୁ ପ୍ରକୃତି ନିର୍ମିତ ପ୍ରକୋଷ୍ଠଗୁଡ଼ିକରେ ସମସ୍ତ ଶ୍ରେଣୀ ବସିଲା । ଆମ୍ଭେମାନେ ମୁକ୍ତ ପବନ, ପୁଷ୍ପ ସୌରଭ ମଧ୍ୟରେ ପ୍ରାକୃତିକ ଅଜଣା ଆହ୍ଲାଦ ଘେନି ପଟି ଆସନରେ ସେହିସବୁ ଶ୍ରେଣୀରେ ପଢ଼ାଶୁଣା କଲୁ ।"

ପଣ୍ଡିତ ଗୋପବନ୍ଧୁଙ୍କ ପରିକଳ୍ପନା ଚମତ୍କାର ବିବେଚିତ ହୋଇଥିଲା ।

ଗୋପବନ୍ଧୁଙ୍କଦ୍ୱାରା ଅନୁପ୍ରାଣିତ ଗୋଷ୍ଠୀଥିଲେ କର୍ମବୀର । ପ୍ରତିବର୍ଷ ଗ୍ରୀଷ୍ମ ଛୁଟିରେ ପଣ୍ଡିତ ଗୋପବନ୍ଧୁ ତାଙ୍କର ସହକର୍ମୀମାନଙ୍କୁ

ନେଇ ସତ୍ୟବାଦୀ ବିଦ୍ୟାଳୟ ପାଇଁ କେବଳ ଅର୍ଥ ସଂଗ୍ରହ କରିବାକୁ ହିଁ ଯାଉନଥିଲେ ବରଂ ଗୃହ ନିର୍ମାଣ ନିମନ୍ତେ ବିଭିନ୍ନ ଉପକରଣମାନ ମଧ୍ୟ ସଂଗ୍ରହ କରୁଥିଲେ । ସେଥିପାଇଁ ଏମାର ମଠର ମହନ୍ତ ମହାରାଜ, ରାଧାକାନ୍ତ ମଠାଧୀଶ ପ୍ରମୁଖ ଧନାଢ୍ୟ ବହୁ ସ୍ଥାନୀୟ ବ୍ୟକ୍ତି ଓ ଗଡ଼ଜାତର ରାଜା ମହାରାଜାମାନେ ଓ ବିଶେଷରେ ଗଞ୍ଜାମର ରାଜା ଓ ଜମିଦାରମାନେ ସତ୍ୟବାଦୀ ବିଦ୍ୟାଳୟର ଗୃହନିର୍ମାଣ ପାଇଁ ଯଥାଶକ୍ତି ସାହାଯ୍ୟ ଓ ସହଯୋଗ ଦେଉଥିଲେ ।

ପ୍ରତିବର୍ଷ ଗ୍ରୀଷ୍ମ ଅବକାଶ ପୂର୍ବରୁ ଏକ ବାର୍ଷିକ ସଭା ସତ୍ୟବାଦୀରେ ଅନୁଷ୍ଠିତ ହେଉଥିଲା । ତତ୍କାଳୀନ ଓଡ଼ିଶାର ବହୁମାନ୍ୟଗଣ୍ୟ ବ୍ୟକ୍ତି ଓ ଯେଉଁମାନଙ୍କର ସତ୍ୟବାଦୀ ବନବିଦ୍ୟାଳୟ ସହିତ ଘନିଷ୍ଠ ସମ୍ପର୍କ ରହିଥିଲା ସେମାନେ ସେଥିରେ ଯୋଗ ଦେଉଥିଲେ । ବିଶେଷ କରି ରାଜା ଜମିଦାରମାନେ, ମହନ୍ତମାନେ ତଥା ମିଷ୍ଟର ଦାସ, ରତ୍ନାକର ପତି, ମଧୁସୂଦନ ରାଓ ପ୍ରମୁଖ ବିଶିଷ୍ଟ ବ୍ୟକ୍ତି ବିଭିନ୍ନ ସମୟରେ ଯୋଗ ଦେଉଥିଲେ । ପଣ୍ଡିତ ଗୋପବନ୍ଧୁ ଥିଲେ ଉଦ୍ୟୋକ୍ତା । ସେ ସତ୍ୟ-ବାଦୀରେ ଥିବା ସମୟରେ ସ୍କୁଲର ସାପ୍ତାହିକ ତର୍କ ସଭାମାନଙ୍କରେ ଯୋଗ ଦେଉଥିଲେ । ତାଙ୍କର ଭାଷଣ ଉପଦେଶାତ୍ମକ ହେଲେ ମଧ୍ୟ ସେଥିରେ ମାଦକତା ପୂରି ରହିଥିଲା । ଛାତ୍ର ତଥା ଉପସ୍ଥିତ ଶ୍ରୋତାଙ୍କୁ ହସାଇ ହସାଇ ବେଦମ୍ କରିଦେବାର ଯେତିକି କ୍ଷମତା ତାଙ୍କର ଥିଲା, ଆଖିରୁ ଶ୍ରାବଣର ବାରିଧାରା ପରି ଅଶ୍ରୁ ନିଗାଡ଼ି ଦେବାର କ୍ଷମତା ଥିଲା ତାଠାରୁ ବେଶୀ ।

ଯେଉଁବର୍ଷ ସତ୍ୟବାଦୀ ସ୍କୁଲର ଗୃହ ଦାହ କରାଯାଇଥିଲା ନିକଟବର୍ତ୍ତୀ ରକ୍ଷଣଶୀଳ ଗ୍ରାମବାସୀମାନଙ୍କ ଦ୍ୱାରା; ସେହି ୧୯୧୫ ମସିହା ଅପ୍ରେଲ ମାସରେ ଅନୁଷ୍ଠିତ ହୋଇଥିବା ବାର୍ଷିକ ସଭାରେ କଲେଜିଏଟ୍ ସ୍କୁଲର ହେଡ଼ମାଷ୍ଟର ତଥା ପଣ୍ଡିତ ନୀଳକଣ୍ଠଙ୍କ ବନ୍ଧୁ ଶ୍ରୀ ଜଗନ୍ନାଥ ମହାପାତ୍ର, ଶ୍ରୀ ଜଗବନ୍ଧୁ ସିଂହ, ଶ୍ରୀ ମଧୁସୂଦନ ଦାସ ପ୍ରମୁଖମାନେ ଯୋଗ ଦେଇଥିଲେ । ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା ସତ୍ୟବାଦୀର

ସ୍କୁଲଗୃହ ନିର୍ମାଣ ତଥା ଅନ୍ୟାନ୍ୟ କେତେକ ଆନୁସଙ୍ଗିକ କାର୍ଯ୍ୟକଳାପ ସଂପର୍କରେ ଆଲୋଚନା କରିବା । ତେବେ ଠିକ୍ ତା ପରଦିନ ଗ୍ରୀଷ୍ମାବକାଶ ଲାଗି ସ୍କୁଲ ବନ୍ଦ ହେବାକୁ ଥିବା ସତ୍ୟବାଦୀର ବାର୍ଷିକ ସଭା ଅବକାଶରେ ସେମାନେ ସେଠାରେ ଯୋଗ ଦେଇଥିଲେ । ସେହି ବାର୍ଷିକ ଉତ୍ସବରେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ଜଗନ୍ନାଥ ମହାପାତ୍ର, ଗୋଦାବରୀଶ, କୃପାସିନ୍ଧୁ ପ୍ରମୁଖ ଭାଷଣ ପ୍ରସଙ୍ଗରେ ଛାତ୍ର ଜୀବନର ଆଦର୍ଶ, ସେମାନଙ୍କ କର୍ତ୍ତବ୍ୟାକର୍ତ୍ତବ୍ୟ ସମ୍ପର୍କରେ ବିଭିନ୍ନ ଉପଦେଶ ଦେଇଥିଲେ ।

ମିଷ୍ଟର ଦାସ ତାଂକ ଭାଷଣ ପ୍ରସଙ୍ଗରେ ଯାହା କହିଥିଲେ ତାହା ଥିଲା ଅତ୍ୟନ୍ତ ମର୍ମସ୍ପର୍ଶୀ । ଉପସ୍ଥିତ ଛାତ୍ର ସମାଜ ସେଥିରେ ଉଦ୍‌ବୁଦ୍ଧ ହୋଇ ଉଠିଥିଲେ । ସେ ଦିନ ସ୍ମରଣ କରି ସେତେବେଳର ସତ୍ୟବାଦୀର ଜଣେ ଛାତ୍ର ଶ୍ରୀ ଚନ୍ଦ୍ରଶେଖର ମିଶ୍ର ଲେଖିଛନ୍ତି "ପରେ ଅନ୍ୟମାନେ କିଛି କହିବା ପରେ ମିଷ୍ଟର ଦାସଂକର ସ୍ୱଭାବ ସୁଲଭ ଗୁରୁଗମ୍ଭୀର ଉତ୍ସାହ-ଦାୟକ ଓ ପ୍ରେରଣାମୂଳକ ବକ୍ତୃତା ଆମ୍ଭେମାନେ ନୂଆକରି ଶୁଣିଲୁ । ସେ କହିଲେ—(ସାରମର୍ମ) ଏ ବିଦ୍ୟାଳୟ ଧନରେ ଗଢ଼ା ହୋଇନାହିଁ । ରକ୍ତ ମାଂସ ମସ୍ତିଷ୍କରେ ଗଢ଼ା ହୋଇଛି । ଗୋପବଂଧୁ, ନୀଳକଣ୍ଠଙ୍କୁ ମୁଁ ବହୁଦିନୁ ଜାଣେ । ସେ ଦୁହେଁ ଏବଂ ଯେଉଁ କୃପାସିଂଧୁ, ଗୋଦାବରୀଶ ଆସିବେ, ଏ ସମସ୍ତେ କେବଳ ଏହି ବିଦ୍ୟାଳୟରେ ସମ୍ପୃକ୍ତ ନୁହନ୍ତି । ପରାଧୀନ ଭାରତର ଓ ଖଣ୍ଡ ବିଖଣ୍ଡିତ ଓଡ଼ିଆ ଜାତିର ମୁକ୍ତି ସାଧନ ପାଇଁ ଏମାନେ ପ୍ରାଣବଳୀ ଦେଇଛନ୍ତି । ତୁମେ ପିଲମାନେ ଏମାନଙ୍କ ପାଖରେ ବସି, ଶୋଇ, କାମକରି ପଢ଼ି ଯେତେବେଳେ ଯୁବକ ହେବ ସେତେବେଳେ ଉତ୍କଳ ଜନନୀର ଶହ ଶହ ଗୁଣୀ ସନ୍ତାନ ଏ ଦେଶର ନାୟକ ହେବେ । ଘର ପୋଡ଼ିଗଲା, ଇଟାର କାନ୍ଥ ଭାଙ୍ଗିଗଲା-ବିଦ୍ୟା-ଳୟର ଗୃହ ରକ୍ତ ମାଂସ ଦ୍ୱାରା ଗଢା ହୋଇଛି । ସରକାର ସନ୍ଦେହ ଦୃଷ୍ଟିରେ ଆମର ଏ ଉଦ୍ୟମକୁ ଦେଖୁଛନ୍ତି । ସି. ଆଇ. ଡି. ଜଗିଛନ୍ତି । ମାତ୍ର ସରକାର ଜାଣିବେ ଏଠାରେ ତୋପ କମାଣର ଯୁଦ୍ଧ ପାଇଁ ଯୋଦ୍ଧା ତିଆରି ହେଉନାହାନ୍ତି । ନୀରବ ଯୋଦ୍ଧା ଗଢ଼ା ହେଉଛନ୍ତି । ତୁମ୍ଭେ

ପିଲମାନେ ତୁମ ଅନୁଷ୍ଠାନକୁ ଭକ୍ତି ଓ ସମ୍ମାନ କର, କରୁଛ ବୋଲି ତୁମ୍ଭମାନଙ୍କର କାର୍ଯ୍ୟକଳାପରୁ ମଧ୍ୟ ମୁଁ ଜାଣୁଛି । କେବେ ମନେକରନାହିଁ ଧନ ନାହିଁ ବୋଲି ଏଠାରେ ଏ ଅନୁଷ୍ଠାନ ଗଢ଼ା ହୋଇପାରିବ ନାହିଁ । ଧନ, ଜୀବନର ଉପାୟ ମାତ୍ର । ସ୍ୱାଧୀନ ମନୁଷ୍ୟର ସାଧୁଚିନ୍ତା ବିଫଳ ହୁଏ ନାହିଁ ।'' (୩)

ସେଇ ସ୍ୱାଧୀନ ମଣିଷର ସାଧୁଚିନ୍ତାର ପରିଣାମ ''ସତ୍ୟବାଦୀ ବନବିଦ୍ୟାଳୟ''ର ଆଜ ଏକ ବାର୍ଷିକ ଉତ୍ସବରେ ସଭାପତିତ୍ୱ କରିବା ପାଇଁ ମଧୁବାବୁଙ୍କୁ ନିମନ୍ତ୍ରଣ କରିଥିଲେ ଛାତ୍ରବୃନ୍ଦ । ମିଷ୍ଟର ଦାସ ମଧ୍ୟ ନିଜର ସ୍ୱୀକୃତି ଦେଇଥିଲେ ସେଥିପାଇଁ । ପୂର୍ବ ବର୍ଷମାନଙ୍କ ଭଳି ସେ ବର୍ଷର ବାର୍ଷିକ ସଭାରେ ସତ୍ୟବାଦୀର କୌଣସି ଶିକ୍ଷକ ସଂଗଠନ ଦିଗରେ କୌଣସି ସହାୟତା କରିନଥିଲେ । ତାହା ଗୋପବନ୍ଧୁଙ୍କ ନିଷ୍ପତ୍ତି ଥିଲା । ବିଦ୍ୟାଳୟର ଛାତ୍ରମାନେ ହିଁ ସମ୍ମିଳନୀର ବାର୍ଷିକ ବିବରଣୀ ପ୍ରସ୍ତୁତ କରିବାଠାରୁ ଆରମ୍ଭ କରି ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କୁ ଷ୍ଟେସନରୁ ସ୍ୱାଗତ କରି ଆଣିବା, ସେମାନଙ୍କ ଅବସ୍ଥାନ ତଥା ଅନ୍ୟାନ୍ୟ ବ୍ୟବସ୍ଥା କରିବା, ସମ୍ମିଳନୀ ପରିଚାଳନା କରିବା ଇତ୍ୟାଦି ସମସ୍ତ ଦାୟିତ୍ୱ ବହନ କରିଥିଲେ । ସମ୍ମିଳନୀର ବିଷୟ ନିର୍ବାଚନବେଳେ ଛାତ୍ରବତ୍ସଳ ଆଚାର୍ଯ୍ୟ ହରିହର ଏବଂ ନୀଳକଣ୍ଠ ଯେତେବେଳେ ଗୋପବନ୍ଧୁଙ୍କୁ କହିଥିଲେ ''ବାସୁଦେବ କରିଦେଉ, ପିଲାଏ ତିନି ଦିନ, ତିନି ରାତି କାମ କଲେଣି'', ପଣ୍ଡିତ ଗୋପବନ୍ଧୁଙ୍କ ଉତ୍ତର ଥିଲା ''ନେପୋଲିୟନ୍ ପରା ସାତ ଦିନ ସାତ ରାତି କଟାଇ ଘୋଡ଼ା ଉପରେ ଯୁଦ୍ଧ କ୍ଷେତ୍ରରେ ମାତ୍ର ଚାରି ମିନିଟ ଶୋଇ କ୍ଳାନ୍ତି ଦୂର କରିଥିଲେ'' ତେଣୁ ସମସ୍ତ କାର୍ଯ୍ୟ ଗଣତାନ୍ତ୍ରିକ ଭିତ୍ତିରେ ଛାତ୍ରମାନଙ୍କୁ ହିଁ ସମାପନ କରିବାକୁ ପଡ଼ିଥିଲା ।

ସମ୍ମିଳନୀର ପୂର୍ବଦିନ ମିଷ୍ଟର ଦାସ ତାଙ୍କର ଶରୀର ଅସୁସ୍ଥ ଥିବା ଦୃଷ୍ଟିରୁ ସେଠାରେ ଉପସ୍ଥିତ ହୋଇ ପାରିବାର ଅକ୍ଷମତା ଜଣାଇ ଟେଲିଗ୍ରାମ କରିଥିଲେ । ତେଣୁ ଛାତ୍ରମାନେ ବିବ୍ରତ ହୋଇ ପଡ଼ିଥିଲେ । ସଭାପତି ଆସନରେ କାହାକୁ ବସାଇବେ ସେଇ ପରାମର୍ଶ ପାଇଁ ସେମାନେ

(୩) ସତ୍ୟବାଦୀରେ ସାତବର୍ଷ—ପୃ ୪୧

ଗୋପବନ୍ଧୁଙ୍କ ନିକଟକୁ ଯାଇଥିଲେ । ନିମନ୍ତ୍ରଣ କରାଯାଇଥିବା ଭଦ୍ରବ୍ୟକ୍ତି-ମାନଙ୍କ ଏକ ତାଲିକା ଦେଇ ଗୋପବନ୍ଧୁ ଛାତ୍ରମାନଙ୍କୁ କହିଥିଲେ ସଭାପତି ନିର୍ବାଚନ କରିବା ଦାୟିତ୍ୱ ସେମାନଙ୍କର । ତେଣୁ ଉଚିତ ବ୍ୟକ୍ତି ସେମାନେ ହିଁ ସ୍ଥିର କରିବେ । ସେଥିପାଇଁ ଛାତ୍ରମାନେ ବ୍ରହ୍ମପୁରର ବିଶିଷ୍ଟ ଓକିଲ ଶ୍ରୀ ହରିହର ପଣ୍ଡାଙ୍କୁ ନିରୂପଣ କରିଥିଲେ ଓ ନିର୍ଦ୍ଧାରିତ ସମୟ- କ୍ରମେ ସଭାକାର୍ଯ୍ୟ ଆରମ୍ଭ ହୋଇଥିଲା ।

ତାର କିଛି ସମୟ ପରେ ଜ୍ୱରାକ୍ରାନ୍ତ ମି: ଦାସ ସତ୍ୟବାଦୀ ଗୋଷ୍ଠୀର ଅନ୍ୟତମ ଶୁଭାକାଂକ୍ଷୀ ପୁରୀର ଏମାର ମଠ ମହନ୍ତଙ୍କ ସହିତ ସିଧାସଳଖ ଆସି ସଭାସ୍ଥଳରେ ହାଜର । ଗୋପବନ୍ଧୁ ତଥା ଅନ୍ୟାନ୍ୟ ଶିକ୍ଷକ ଓ ଛାତ୍ରବୃନ୍ଦ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ଆନନ୍ଦିତ ମଧ୍ୟ ହୋଇ-ଥିଲେ । ରକ୍ତ, ମାଂସ, ମସ୍ତିଷ୍କରେ ଗଢ଼ା ବିଦ୍ୟାଳୟର ମମତା ତାଙ୍କୁ ସେଠାକୁ ଟାଣି ଆଣିଥିଲା । ଯଦିଓ ଦେହରେ ଜ୍ୱର ଥିଲା ସେଇଲାଗି ସେ ବିଶ୍ରାମ ନେଇପାରି ନଥିଲେ । ଗୋପବନ୍ଧୁଙ୍କ ବନବିଦ୍ୟାଳୟର ନିମନ୍ତ୍ରଣକୁ ସେ ଉପେକ୍ଷା କରିପାରି ନଥିଲେ । ବିଶେଷ କରି ଛାତ୍ରମାନଙ୍କ ମମତା ଓ ଆଗାମୀ ଯୁବ ସମାଜର ଆକର୍ଷଣରେ ସେ ଟାଣିହୋଇ ଆସିଥିଲେ । ସେଠାରେ ପହଞ୍ଚି ସେ ଆହୁରି ଆନନ୍ଦିତ ହୋଇ ଯାଇଥିଲେ ଯେତେବେଳେ ଶୁଣିବାକୁ ପାଇଥିଲେ ଯେ ସେଇ ବାର୍ଷିକ ସମ୍ମିଳନୀର ସମସ୍ତ କାର୍ଯ୍ୟ କେବଳ ଛାତ୍ରମାନଙ୍କ ଦ୍ୱାରା ହିଁ ସମାହିତ ହେଉଛି । ସଭାକାର୍ଯ୍ୟ କ୍ରମରେ ମଧୁବାବୁଙ୍କ ଲାଗି କିଛି ସମୟ ନିର୍ଦ୍ଧାରଣ କରାଯାଇଥିଲା ଓ ଛାତ୍ରମାନଙ୍କୁ ସେ ଉଦ୍‌ବୋଧନ ଦେଇଥିଲେ । ତା ପରଦିନ ଡ୍ରିଲ୍ ଓ ଶ୍ଳୋକାନ୍ତ ପ୍ରତି-ଯୋଗିତାର ମୀମାଂସକ ଥିଲେ ନିଜେ ମଧୁବାବୁ । ଛାତ୍ରମାନଙ୍କ କାର୍ଯ୍ୟ-କଳାପ, ଆଉରି ବ୍ୟବହାରରେ ଗୁଣଗ୍ରାହୀ ମଧୁବାବୁ ସେ ଦିନ ଆନନ୍ଦାତିଶଯ୍ୟରେ ଫାଟି ପଡ଼ି କହିଥିଲେ—"ଗୋପବନ୍ଧୁ, ନାଳନ୍ଦାଟାଏ ତ ଗଢ଼ିଦେଲୁ ।" ସଙ୍ଗେ ସଙ୍ଗେ ଗୋପବନ୍ଧୁଙ୍କ ଉତ୍ତର ଥିଲା "ମୁଁ ନୁହେ ମାଳକଣ୍ଠ ।"

ଓଡ଼ିଶାର ଦୀନ ଦରିଦ୍ରର ବନ୍ଧୁ ଗୋପବନ୍ଧୁଙ୍କ କର୍ମସ୍ଥଳ କେବଳ ସତ୍ୟବାଦୀ ନଥିଲା, ଥିଲା ସାରା ଓଡ଼ିଶା । ସେ ସବୁର କେନ୍ଦ୍ରସ୍ଥଳୀ

ଥିଲା ସତ୍ୟବାଦୀ । ଓଡ଼ିଶାର ଏ ମୁଣ୍ଡରୁ ସେ ମୁଣ୍ଡ ଘୂରି ବୁଲିବା ଅବସରରେ ଯେଉଁଠି ଗରିବ ଓ ମେଧାବୀ ଛାତ୍ରମାନଙ୍କର ସଂଧାନ ପାଉଥିଲେ ସେମାନଙ୍କୁ ତାଙ୍କର ମଣିଷ ଗଢ଼ା କାରଖାନାକୁ ନେଇ ଆସୁଥିଲେ ଉତ୍ତମ ମଣିଷଟିଏ କରି ଗଢ଼ି ତୋଳିବା ପାଇଁ । ତା ପରେ ତାଙ୍କର ହାତର ପରଶ ପାଇ ସେମାନେ ସର୍ବାଙ୍ଗ ସୁନ୍ଦର ହୋଇ ଉଠୁଥିଲେ । ସତ୍ୟବାଦୀର ଭଲ ଭଲ ପିଲାଙ୍କ ସହ ସେମାନଙ୍କ ପରିଚୟ କରାଇ ଦେଉଥିଲେ । ଶିକ୍ଷକମାନଙ୍କୁ ବ୍ୟକ୍ତିଗତ ଭାବେ ଚିହ୍ନାଇ ଦେଉଥିଲେ, କିପରି ଉତ୍ତମ ଛାତ୍ର ହୋଇପାରିବ ସେଥିପାଇଁ ପରାମର୍ଶ ଦେଉଥିଲେ ସମୟେ ସମୟେ । ସେଇମିତି ଥରେ ଗଞ୍ଜାମରୁ ଜଣେ ମେଧାବୀ ଛାତ୍ରକୁ ସଙ୍ଗରେ ନେଇ ସତ୍ୟବାଦୀ ଫେରିଥିଲେ । କିନ୍ତୁ ଦୁର୍ଭାଗ୍ୟର ବିଡମ୍ବନା ଅଳ୍ପଦିନ ବିଦ୍ୟାଳୟରେ ରହିବା ପରେ ଜଳୋଦରୀ ରୋଗରେ ତାର ମୃତ୍ୟୁ ହୋଇଥିଲା । ଗୁଣଗ୍ରାହୀ ଗୋପବନ୍ଧୁ ସେଇ ଛାତ୍ର ପାଇଁ ଅନୁଷ୍ଠିତ ହେଉଥିବା ଶୋକ ସଭାରେ ଯେଉଁ ଭାଷଣ ଦେଇଥିଲେ; ଉପସ୍ଥିତ ସମସ୍ତଙ୍କ ଚକ୍ଷୁ ଲୋତକାପ୍ଲୁତ ହୋଇ ଉଠିଥିଲା । ସେଇମିତି ଆଉଥରେ ଯେତେବେଳେ କଳାହାଣ୍ଡିର ଜଣେ ଛାତ୍ରର ମୃତ୍ୟୁ ପାଇଁ ଅନୁଷ୍ଠିତ ହେଉଥିବା ଶୋକ ସଭାରେ ଗୁଣିଛାତ୍ରପ୍ରିୟ ଗୋପବନ୍ଧୁଙ୍କ ବିଗଳିତ ପ୍ରାଣର ଭାଷା ସମସ୍ତଙ୍କ ପ୍ରାଣକୁ ଛୁଇଁ ସାରିଥିଲା ।

ସେଇ ବକୁଳ କୁଞ୍ଜ ଛୁଆଁଅନା ତଳେ ଶିକ୍ଷା ଲାଭ କରିଥିବା ଛାତ୍ର ଶ୍ରୀ ଅନନ୍ତଚରଣ ଶତପଥୀଙ୍କ ଭାଷାରେ "ଗୋପବନ୍ଧୁଙ୍କ କଳ୍ପନା ଥିଲା ସତ୍ୟବାଦୀ ବନ ବିଦ୍ୟାଳୟର ମୁକ୍ତ ବାତାବରଣ ଭିତରେ ବର୍ଷକୁ ବର୍ଷ ମନୁଷ୍ୟ ଗଢ଼ା ହୋଇ ବାହାରିବେ ଯେପରିକି ସେମାନେ ଦେଶ ଓ ଦଶର ସେବାରେ ନିୟୋଜିତ ହୋଇ ପାରିବେ । ସେଥିପାଇଁ ଛାତ୍ରମାନଙ୍କୁ ସ୍ୱାବଲମ୍ବୀ ହୋଇ ଜୀବନ ନିର୍ବାହ କରିବା ଅଭିପ୍ରାୟରେ ନାନାପ୍ରକାର ବୈଷୟିକ ଶିକ୍ଷା ଦିଆଯାଉଥିଲା । ସୂତାକଟା, ବଢ଼େଇ କାମ ଓ କୁଟୀର ଶିଳ୍ପ ଲାଗି ଶିକ୍ଷାର ବ୍ୟବସ୍ଥା ରହିଥିଲା । କି ଶିକ୍ଷକ, କି ଛାତ୍ର ସମସ୍ତେ ଏକାଠି ମିଶି କାନ୍ଧକୁ କାନ୍ଧ ଲଗାଇ କାମ କରୁଥିଲେ । ଗୃହ ନିର୍ମାଣ କାର୍ଯ୍ୟ ସମ୍ପନ୍ନ କରିବାରେ ଛାତ୍ର ଶିକ୍ଷକଙ୍କ ମଧ୍ୟରେ କୌଣସି

ପ୍ରଭେଦ ରହି ନଥିଲା । ଗ୍ରାମ ସଂଗଠନ କାର୍ଯ୍ୟ ସାଧନ ସଙ୍ଗରେ ଅର୍ଥାତ୍ ଗ୍ରାମ ଦାହ, ବସନ୍ତ, ହଇଜା ପ୍ରଭୃତି ସଂକ୍ରାମକ ରୋଗରେ ଆକ୍ରାନ୍ତ ହେଲେ ଛାତ୍ରଗଣ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ରହି ସ୍ୱେଚ୍ଛାସେବକରୂପେ କାମ କରୁଥିଲେ । ସ୍କୁଲରେ ଯେ କେବଳ ନିର୍ଦ୍ଧାରିତ ପାଠ ପଢ଼ାଯାଉଥିଲା ସେତିକି ନୁହେଁ, ତା ଛଡ଼ା ଇଟାଲି, ଜର୍ମାନୀ, ଆମେରିକା ପ୍ରଭୃତି ଦେଶ କିପରି ବିଦେଶୀ ଶାସନ କବଳରୁ ସ୍ୱାଧୀନତା ଲାଭ କଲେ, ସେ ବିଷୟରେ ଆଲୋଚନା କରାଯାଉଥିଲା । ଏଠାକୁ ବାହାରୁ ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ନିମନ୍ତ୍ରିତ ହେଉଥିଲେ । ଶିକ୍ଷକମାନଙ୍କ ମଧ୍ୟରେ ଭଲ ବକ୍ତୃତା ଦେଉଥିଲେ ପଣ୍ଡିତ ନୀଳକଣ୍ଠ ଦାସ । ଆଚାର୍ଯ୍ୟ ହରିହର ଅଳ୍ପ କହି ପିଲାମାନଙ୍କ ଉପରେ ବହୁତ ପ୍ରଭାବ ବିସ୍ତାର କରି ପାରୁଥିଲେ ।" (୪)

ତାହାହିଁ ଥିଲା ଗୋପବନ୍ଧୁଙ୍କର ସତ୍ୟବାଦୀ ବିଦ୍ୟାଳୟ ।

ଯେଉଁଠି ରୁହନ୍ତୁ ନା କାହିଁକି ଗୋପବନ୍ଧୁ ଉତ୍କଳ ସମ୍ମିଳନୀ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ ୧୯୦୩ ମସିହାରୁ; ସେହି ଅନୁଷ୍ଠାନର ଆରମ୍ଭଠାରୁ । ତେଣୁ ସେ ଭିନ୍ନ ଭିନ୍ନ ସମୟରେ ତାହାର ସଂଗଠନଠାରୁ ଆରମ୍ଭ କରି ପ୍ରତ୍ୟେକ ଅଧିବେଶନରେ ଯୋଗ ଦେଇଥିଲେ । ୧୯୧୪ ମସିହାରେ ପାରଳାରେ ଯେଉଁ ସମ୍ମିଳନୀ ହୋଇଥିଲା ସେଥିପାଇଁ ସେଠାକୁ ଯାଇ ବିଶିଷ୍ଟ ସଂଗୀତଜ୍ଞ ଓ ଅନ୍ଧ ଶ୍ରୀ ଆପନ୍ନା ପରିଚ୍ଛାଙ୍କ ସଂସ୍ପର୍ଶରେ ଆସିଥିଲେ । ପାରଳାର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମଧ୍ୟ ଥିଲେ ସଙ୍ଗୀତପ୍ରିୟ ଓ ଅତ୍ୟନ୍ତ ଓଡ଼ିଆପ୍ରେମୀ । ତେଣୁ ଅନ୍ଧ ସଙ୍ଗୀତଜ୍ଞଙ୍କୁ ସେ ପୃଷ୍ଠପୋଷକତା କରୁଥିଲେ । ତାଙ୍କ ଗୁଣ ଗରିମାରେ ଆକୃଷ୍ଟ ହୋଇ ପଣ୍ଡିତ ଗୋପବନ୍ଧୁ ଶ୍ରୀଯୁକ୍ତ ପରିଚ୍ଛାଙ୍କୁ ୧୯୨୬ ମସିହାରେ ସଙ୍ଗରେ ନେଇଯାଇଥିଲେ ସତ୍ୟବାଦୀକୁ ମହାରାଜାଙ୍କ ଅନୁମତିକ୍ରମେ । ଉଦ୍ଦେଶ୍ୟ ଥିଲା ସତ୍ୟବାଦୀର ସଂଗୀତପ୍ରିୟ ଛାତ୍ରମାନଙ୍କୁ ତିନିମାସ ସଂଗୀତ ଶିକ୍ଷା ଦେଇ ସେ ଫେରି ଆସିବେ ।

---

(୪) ଯୁଗପୁରୁଷ ଗୋପବନ୍ଧୁ ଦାସ—ସଂ: ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ପୃ. ୭୨-୭୩

ସତ୍ୟବାଦୀରେ ସଂଗୀତ ଶ୍ରେଣୀ ଖୋଲିଥିଲ । ତାଙ୍କର ସଂଗୀତ ଦ୍ୱାରା ସେ ସମଗ୍ର ବିଦ୍ୟାଳୟର ଛାତ୍ରମାନଙ୍କୁ ଏତେ ଆକୃଷ୍ଟ କରି ପାରିଥିଲେ ଯେ କଠୋର ଶୃଙ୍ଖଳା ରକ୍ଷାକାରୀ ନୀଳକଣ୍ଠଙ୍କ ଅନୁଶାସନ କାଳରେ ମଧ୍ୟ ସମସ୍ତ ଛାତ୍ର ସେହି ସଙ୍ଗୀତ ଶ୍ରେଣୀରେ ଜମିଯାଇଥିଲେ ପ୍ରଥମ ଦିନ ଏବଂ ଛାତ୍ରବତ୍ସଳ ନୀଳକଣ୍ଠ ବାଧ୍ୟ ହୋଇ ସ୍କୁଲର ଶେଷଘଣ୍ଟା ସଂଗୀତ ପାଇଁ ଛୁଟି ଦେବା ବ୍ୟତୀତ ଅନ୍ୟ କୌଣସି ଉପାୟ ଦେଖି ପାରି ନଥିଲେ । ଆପଣାଙ୍କ ତାହା ହିଁ ଆକର୍ଷଣ । ଆକର୍ଷଣୀୟ ଥିଲା ସଂଗୀତର ଝଂକାର ଏବଂ ତାଂକର ସ୍ୱର ଲହରୀ । ତା ପରେ ଗୋପବନ୍ଧୁ ଆସି ଆପଣାଙ୍କୁ ବୁଝାଇ ଦେଇଥିଲେ ଯେ ସେ ସଂଗୀତପ୍ରିୟ ଛାତ୍ରମାନଙ୍କୁ ଯନ୍ତ୍ର ବାଦ୍ୟ ନ ଶିଖାଇ ଛାତ୍ରମାନଙ୍କର ନିୟମାଦି ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଭାବ ଓ ରସର ମୂର୍ଚ୍ଛନା ପାଇଁ ସଂଗୀତ ବୋଲିବାର ଭଙ୍ଗୀ ଶିକ୍ଷା ଦେବେ ।

ତା ପରେ ତାହା ହିଁ ହୋଇଥିଲା ।

ଗୋପବନ୍ଧୁଙ୍କ ପରିକଳ୍ପିତ ସତ୍ୟବାଦୀ ବନ ବିଦ୍ୟାଳୟ ଥିଲା, ସେ ଯେମିତି କହୁଥିଲେ, ବାସ୍ତବିକ୍ ଏକ ମଣିଷଗଢ଼ା କାରଖାନା । ଜାତୀୟତାବାଦର ଭିତ୍ତିଭୂମି ଉପରେ ତାହା ପ୍ରତିଷ୍ଠିତ ଥିଲା । ଗୋପବନ୍ଧୁଙ୍କର ଜଣେ ସହକର୍ମୀ, ଓଡ଼ିଶାର ଅନ୍ୟତମ ପୁରାତନ ରାଜନୈତିକ ନେତା ସମାଜସେବୀ ଶ୍ରୀ ବିଶ୍ୱନାଥ ଦାସଙ୍କ ଭାଷାରେ "ଆଦର୍ଶ ଶିକ୍ଷାର ପ୍ରବର୍ତ୍ତନ ବିନା ସମାଜର ପୁନର୍ଗଠନ ଅସମ୍ଭବ । ଏ କ୍ଷେତ୍ରରେ ମଧ୍ୟ ସେ (ଗୋପବନ୍ଧୁ) ଗାନ୍ଧୀଙ୍କର ପୂର୍ବରୂପ ଥିଲେ । ଗାନ୍ଧିଜୀ ଯେପରି "ନୟୀତାଲିମ୍"ର ସ୍ଲୋଗାନ୍ ଦେଇ ଓ୍ୱାର୍ଦ୍ଧାଠାରେ ଶିକ୍ଷାଶ୍ରମ ପ୍ରତିଷ୍ଠା କରିଥିଲେ ଗୋପବନ୍ଧୁ ମଧ୍ୟ ସେହିପରି ସତ୍ୟବାଦୀରେ ତାଙ୍କର ଜାତୀୟ ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରି ଦେଇଥିଲେ । ରାଷ୍ଟ୍ର ନିୟନ୍ତ୍ରଣର ବାହାରେ ସ୍ୱାଧୀନ ଭାବେ ଭାରତୀୟ ସଂସ୍କୃତି ଓ ପରଂପରାର ପୁନରୁଦ୍ଧାର କରିବା ଥିଲା ଉଭୟଙ୍କର ଲକ୍ଷ୍ୟ । ସେତେବେଳେ ଡ଼କ୍ଟର ସେଡ଼ଲାର କମିଶନ ଭାରତ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିଲେ । ସାର୍ ଆଶୁତୋଷ ମୁଖାର୍ଜୀ ଥିଲେ ସେହି କମିଶନର ଅନ୍ୟତମ ସଦସ୍ୟ ।

କମିଟିକ୍ ଆସି ସତ୍ୟବାଦୀ ଶିକ୍ଷାପଦ୍ଧତି ଅନୁଧ୍ୟାନ କରି ଗୋପବନ୍ଧୁଙ୍କ ଉଦ୍ୟମର ଭୂୟସୀ ପ୍ରଶଂସା କରିଥିଲେ ।'' (୫)

ଯଥାର୍ଥରେ ସେହି ଅନୁଷ୍ଠାନର ଜଣେ ପୁରାତନ ଛାତ୍ର ଏବଂ ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟ ସମାଲୋଚକ ଚିନ୍ତାମଣି ଦାସ ମନ୍ତବ୍ୟକ୍ତ କରିଛନ୍ତି, ''ରବୀନ୍ଦ୍ରନାଥ ଠାକୁରଙ୍କ ଶାନ୍ତିନିକେତନ ପରି ଗୋପବନ୍ଧୁଙ୍କ ବନ ବିଦ୍ୟାଳୟ ଥିଲା ଗୋଟିଏ ଲାବଣ୍ୟଭରା କାବ୍ୟ କୁସୁମ × × × ସତ୍ୟବାଦୀ ବନ ବିଦ୍ୟାଳୟ ଯେତେବେଳେ ଯେଉଁମାନେ ପରିଦର୍ଶନ କରିବାକୁ ଆସୁଥିଲେ ସେମାନେ କେବଳ ବିଦ୍ୟାଳୟର ବାହ୍ୟ ପରିବେଷ୍ଟନୀ ଦେଖି ନ ଥିଲେ ଗୋପବନ୍ଧୁ ଓ ତାଙ୍କ ସହକର୍ମୀମାନଂକ କର୍ମ ପ୍ରବାହ ଲକ୍ଷ୍ୟ କରି କେବଳ ମୁଗ୍ଧ ହୃଦୟରେ ଫେରୁ ନ ଥିଲେ, ସେମାନେ ସେଠାରେ ଦେଖୁଥିଲେ ଗୋପବନ୍ଧୁଂକ ମାନସ ପ୍ରବଣତା, ଉଚ୍ଚ ଭାବନା, ଧ୍ୟାନ କଳ୍ପନା ଏବଂ ତାଂକର ବଳିଷ୍ଠ ବ୍ୟକ୍ତିତ୍ୱର ଦ୍ୟୋତନା ।



(୫) ଯୁଗପୁରୁଷ ଗୋପବନ୍ଧୁ ଦାସ—ସଂ : ଶ୍ରୀ ସୂର୍ଯ୍ୟନାରାୟଣ ଦାସ, ପୃ. ୨୩୨

॥ ଛଅ ॥

# ଜାତୀୟ ମମତା ଅଟେ ବିଶ୍ୱଜନ ପ୍ରୀତି

ସେତେବେଳେ ସମଗ୍ର ଭାରତରେ ୧୯୧୯ ମସିହାର ଶାସନ ଆଇନ କାର୍ଯ୍ୟକାରୀ ହେଉଥାଏ । ତାହାଥିଲା ମର୍ଲେ-ମିଣ୍ଟୋ ଶାସନ ସଂସ୍କାରର ପରିଣାମ । ସେଥିରେ ଯେଉଁ ବିଧିବିଧାନ ଥିଲା ସେହି ଅନୁସାରେ ସାରା ଓଡ଼ିଶାରୁ ମାତ୍ର ଜଣେ ପ୍ରତିନିଧି ବିହାର ଓଡ଼ିଶା କାଉନସିଲର ସଭାରେ ପ୍ରତିନିଧିତ୍ୱ କରୁଥିଲେ ଓଡ଼ିଶାର ସମସ୍ତ ସ୍ୱାୟତ୍ତ-ଶାସନ ଅନୁଷ୍ଠାନ ତରଫରୁ । ବିଧାନସଭାର ଅଧିକାଂଶ ଆସନ ଅଳଂକୃତ କରୁଥିଲେ ସରକାରଂକ ଦ୍ୱାରା ମନୋନୀତ ସଭ୍ୟଗଣ ଏବଂ ଅତି କମ୍ ସଂଖ୍ୟକ ସଭ୍ୟ ଥିଲେ ବେସରକାରୀ । ତେଣୁ ବେସରକାରୀ ସଭ୍ୟ ଯେଉଁମାନେ କି ପ୍ରକୃତରେ ଜନସାଧାରଣଂକ ସ୍ୱାୟତ୍ତଶାସନ ଅନୁଷ୍ଠାନ-ମାନଂକର ପ୍ରତିନିଧି, ସେମାନଂକ ପାଇଁ କାର୍ଯ୍ୟକଳାପ ସୀମିତ ଥିଲା । ଅନ୍ୟଭାଷାରେ କହିବାକୁ ଗଲେ ସେମାନେ ବାସ୍ତବିକ କିଛି କରିପାରିବା ଅବସ୍ଥାରେହିଁ ନଥିଲେ ।

ବିହାର-ଓଡ଼ିଶା ଶାସନ ସଭାରେ ମ୍ୟୁନିସିପାଲ୍ଟିଗୁଡ଼ିକୁ ପ୍ରତିନିଧିତ୍ୱ କରୁଥିବା କୁଳବୃଦ୍ଧ-ମଧୁସୂଦନଂକ କାର୍ଯ୍ୟକାଳ ୧୯୧୭ ମସିହାରେ ଶେଷ ହୋଇଥିଲା । ସେହିସ୍ଥାନ ପୂର୍ତ୍ତି କରିଥିଲେ ପଣ୍ଡିତ ଗୋପବନ୍ଧୁ । ୧୯୧୭ ମସିହାରୁ ୧୯୨୦ ମସିହା ପର୍ଯ୍ୟନ୍ତ ଗୋପବନ୍ଧୁ ବିହାର-ଓଡ଼ିଶା କାଉନ୍-ସିଲ୍‌ର ସଭ୍ୟ ଥିଲେ । ତେବେ ମଧୁବାବୁ ନିଜର ସ୍ୱାସ୍ଥ୍ୟ ତଥା ବୟସର ଆଧିକ୍ୟ ଦୃଷ୍ଟିରୁ ସେଥିରୁ ଓହରି ଯିବାପାଇଁ ମନବଳାଇଥିଲେ ମଧ୍ୟ ତାହା ସମ୍ଭବପର ହୋଇପାରି ନଥିଲା । ପୁଣି ସରକାରଂକ ତରଫରୁ ବିହାର-ଓଡ଼ିଶା କାଉନସିଲରେ ସେ ସଭ୍ୟଭାବେ ଯୋଗ ଦେଇଥିଲେ ଗୋପବନ୍ଧୁଙ୍କ ସହିତ । ଆଉ ଯେଉଁମାନେ ଓଡ଼ିଶାରୁ ସେଇଠି ସଭ୍ୟଥିଲେ

ସେମାନେ ହେଲେ ଓଡ଼ିଶାର ଜମିଦାରମାନଙ୍କ ତରଫରୁ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ କନିକାର ରାଜା, ମୁସଲମାନମାନଙ୍କ ତରଫରୁ ଖାଁ ବାହାଦୁର ଖ୍ୱାଜା ମହମ୍ମଦ ନୁର୍ ଓ ଜିଲ୍ଲା ବୋର୍ଡ଼ମାନଙ୍କ ତରଫରୁ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ।

ଓଡ଼ିଶାରୁ ନବନିର୍ବାଚିତ ସଭ୍ୟମାନଙ୍କୁ ଏକ ସମ୍ବର୍ଦ୍ଧନା ଦେବାପାଇଁ ଆୟୋଜନ କରିଥିଲେ ମଧୁବାବୁ ନିଜଘରେ । ସେଇ ଅବସରରେ କଟକ ଡିଭିଜନ ପାଇଁ କମିଶନର ଶ୍ରୀ ଲି. ମେସୁରିଏର (Mr. Le Mesurier) ସେଇ ସଭାରେ ମଧ୍ୟ ଯୋଗ ଦେଇଥିଲେ । ସେହି ଅଭ୍ୟର୍ଥନା ଉତ୍ସବରେ ପଣ୍ଡିତ ଗୋପବନ୍ଧୁ ଓ ବ୍ରଜସୁନ୍ଦର ବାବୁ ସାମାନ୍ୟ ଡେରିରେ ଯାଇ ପହଞ୍ଚିଥିଲେ । ସମସ୍ତେ ସେମିତି ତାହାଙ୍କୁ ଅପେକ୍ଷା କରିଥିଲେ । ସେମାନେ ଯିବାପରେ କୁଳବୃଦ୍ଧ ଠିକ୍ ଏ ହାସ୍ୟରସ ସୃଷ୍ଟି କରିବାପାଇଁ କହିଥିଲେ, "ଜଣେ ତ ଗୋପର ବନ୍ଧୁ, ଆଉ ଜଣେ ତ ବ୍ରଜର ସୁନ୍ଦର । ଉଭୟେ ଏକା କୃଷ୍ଣର ନାମ ଧରିଥିବାରୁ ଏକା ସମୟରେ ଓ ଏକାଭାବରେ ଆସି ପହଞ୍ଚିଗଲେ । ଠିକ ସମୟରେ ଆସିଲେ ଭଲକଲେ; ନ ଆସିଥିଲେ ଏ ଉତ୍ସବ ଏ ଦୁହିଁଙ୍କ ବିନା ସୁନ୍ଦର ଦିଶିନଥାନ୍ତା ।" (୧)

ସେତେବେଳେ ବିଧାନସଭାଗୁଡ଼ିକର ନିର୍ଦ୍ଧାରିତ ସମୟ ସୀମା ଥିଲା ତିନିବର୍ଷ । ସେହି ଦୃଷ୍ଟିରୁ ଗୋପବନ୍ଧୁଙ୍କ ସଭ୍ୟମିଆଦ ୧୯୨୦ ବେଳକୁ ଶେଷ ହୋଇଯିବା କଥା । ୧୯୧୯ ମସିହାରେ ଭାରତ ସରକାରଙ୍କ ଦ୍ୱାରା ଗଠିତ ମଣ୍ଟେଗୁ ଚେମ୍ସଫୋର୍ଡ଼ କମିଶନ୍‌ର ଶାସନ-ସଂସ୍କାର ପ୍ରସ୍ତାବଗୁଡ଼ିକ ୧୯୨୧ ଅପ୍ରେଲ ପହିଲାରୁ କାର୍ଯ୍ୟକାରୀ ହେବାଲାଗି ନିର୍ଦ୍ଧାରଣ କରାଯାଇଥିଲା । ସେହି ଶାସନ ସଂସ୍କାରକୁ କାର୍ଯ୍ୟକାରୀ କରିବା ଦୃଷ୍ଟିରୁ ବିଧାନସଭାଗୁଡ଼ିକର ବୟସ ସୀମା ଆଉରି ବର୍ଷେ ବଢ଼ାଇ ଦିଆଯାଇଥିଲା । ତିନିବର୍ଷ ପାଇଁ ନିର୍ବାଚିତ ହୋଇଥିବା ବିଧାନ-ସଭାର ସଭ୍ୟମାନେ ଚାରିବର୍ଷ ବ୍ୟବସ୍ଥାପକରୂପେ ରହିବା ପାଇଁ ହୋଇଥିଲା । ଗୋପବନ୍ଧୁ ମଧ୍ୟ ସେ ସୁଯୋଗର ଅଧିକାରୀ ଥିଲେ । କିନ୍ତୁ

---

(୧) ଦେଶପ୍ରାଣ ମଧୁସୂଦନ — ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ପୃ ୩୯୫

୧୯୨୧ ମସିହାରେ ଯେତେବେଳେ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ ସେ ଘୋଷଣା କରିଥିଲେ ଯେ ବିଧାନସଭାରେ ସଭ୍ୟଭାବେ ରହିବାକୁ ସେ ଆଉ ଇଚ୍ଛାକ୍ତ ନାହିଁ । ସେ ଘୋଷଣା ପରେ ତଦାନୀନ୍ତନ ଲାଟ ସାରଗେଣ୍ଟ ତାହାଙ୍କୁ କହିଥିଲେ, "ଗୋପବନ୍ଧୁ, ତୁମେ ଓଡ଼ିଶାର ଉପକାର ପାଇଁ ବିଧାନସଭାରେ ଯେଉଁସବୁ ଉଦ୍ୟମ କର-ପାରୁଥିଲ, ଅସହଯୋଗରେ ଯୋଗଦେଲେ ତାହା ହୋଇପାରିବ କି ? ଫଳରେ ଯେତୁଡ଼ିକ ଭାଙ୍ଗିଯିବ ସିନା !" ଗୋପବନ୍ଧୁ ଉତ୍ତର ଦେଇ-ଥିଲେ, "ଆପଣଙ୍କର ଶାସନତନ୍ତ୍ର ଲୁହାଠାରୁ ବଳି କଠିନ । ମୋର ତିନିବର୍ଷ କାଳ ବିଧାନସଭାରେ କରୁଣ ପ୍ରାର୍ଥନାର କି ଫଳ ହେଲା ? ବନ୍ୟା ପ୍ରତିକାର ଲାଗି କୌଣସି ଉଦ୍ୟମ ହେଲା ନାହିଁ । ଲୁଣ ଯୋଗାଣର କୌଣସି ସୁବିଧା ହେଲା ନାହିଁ । ଯଥାର୍ଥ ଶିକ୍ଷା ପ୍ରସାର କଳ୍ପନା ମଧ୍ୟ ଏ ଶାସନତନ୍ତ୍ର ପକ୍ଷରେ ଅସମ୍ଭବ । ପୁରୀ ଦୁର୍ଭିକ୍ଷରେ ଲୋକେ ପୋକ ମାଛି ପରି ମଲେ । ତଥାପି ଆପଣଙ୍କ ଶାସନ ଯନ୍ତ୍ର କହିଲେ ଏହା ଦୁର୍ଭିକ୍ଷ ନୁହେଁ । ଏ ଅବସ୍ଥାରେ ଏ ସରକାର ସଙ୍ଗେ ଅଧିକ ଦିନ ଯୋଗରେ ରହିଲେ କି ଫଳ ମିଳିବ ? ଅସହଯୋଗ ଏସବୁ କାର୍ଯ୍ୟ ସାଧନର ଉପଯୁକ୍ତ ପନ୍ଥା । ଏ ଦେଶ ଲୋକେ ଯଦି ଅସହଯୋଗରେ ବ୍ରତୀ ହୁଅନ୍ତି ଆପଣଙ୍କ ସରକାର ସେମାନଙ୍କ ଦାବିକୁ ଆଉ ଉପେକ୍ଷା କରିପାରିବେ ନାହିଁ । ମୁଁ ଏହା ଯଥାର୍ଥରେ ବୁଝିଛି ।" (୨)

ବିଧାନସଭାର ଅଧିବେଶନଗୁଡ଼ିକରେ ଅଂଶଗ୍ରହଣ କରିବାକୁ ଯିବା ପୂର୍ବରୁ ଗୋପବନ୍ଧୁ ନିଜକୁ ପ୍ରସ୍ତୁତ କରୁଥିଲେ ସେଥିପାଇଁ । କେବଳ ସେଠାରେ ଜଣେ ଶ୍ରୋତା ଭାବରେ ଅଂଶଗ୍ରହଣ କରିବାକୁ ସେ ପସନ୍ଦ କରୁନଥିଲେ । ବିଶେଷତଃ ନିର୍ବାଚିତ ସଦସ୍ୟମାନଙ୍କ ସଂଖ୍ୟା ବିଧାନସଭା-ଗୁଡ଼ିକରେ ଅତିକମ୍ ଥିଲା ଏବଂ ସେହି କାରଣରୁ ବେସରକାରୀ ସଭ୍ୟମାନେ ପ୍ରକୃତରେ ସେମାନଙ୍କ ଚେଷ୍ଟାରେ କିଛି କରିପାରିବା ଅବସ୍ଥାରେ ନ ଥିଲେ । ସେ ପରିସ୍ଥିତିରେ ଗୋପବନ୍ଧୁ ସ୍ପଷ୍ଟ ରୂପେ

(୨) ଡକ୍ଟର ଶ୍ରୀରାମଚନ୍ଦ୍ର ଦାସ, ଯୁଗପୁରୁଷ ଗୋପବନ୍ଧୁ—ସଂ: ସୂର୍ଯ୍ୟ-ନାରାୟଣ ଦାସ, ପୃ ୨୫୦

ଅନୁଭବ କରିଥିଲେ ଯେ ବ୍ୟବସ୍ଥାପକ ସଭାକୁ ପ୍ରତିନିଧି ନିର୍ବାଚିତ ହୋଇ ମଧ୍ୟ ସେକାଳ କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିପାରିବେ ନାହିଁ । ତଥାପି ମଧୁବାବୁଙ୍କ ପରାମର୍ଶ ତଥା ପ୍ରାର୍ଥୀପଦରେ ତାଙ୍କର ପ୍ରସ୍ତାବ ଯୋଗୁଁ ସେ ସେଥିରେ ସମ୍ମତ ହୋଇଥିଲେ ।

ଥରେ ସଭ୍ୟପଦ ଗ୍ରହଣ କରିବା ପରେ ସେ ସମସ୍ତ ନିଷ୍ଠାର ସହିତ କର୍ତ୍ତବ୍ୟ ସମ୍ପାଦନ କରିବା ଲାଗି ବ୍ୟସ୍ତ ହୋଇଥିଲେ । ତେଣୁ ବିଧାନସଭା ଅଧିବେଶନରେ ଯୋଗ ଦେବା ପାଇଁ ପାଟନା ଯିବା ପୂର୍ବରୁ ରାସ୍ତାରେ କଲିକତାଠାରେ ଓହ୍ଲାଇ ବିଭିନ୍ନ ବିଜ୍ଞଲୋକଙ୍କ ସହିତ ଆଲୋଚନା ଓ ପରାମର୍ଶ କରିବା ସଙ୍ଗେ ସଙ୍ଗେ ଅନେକ ସମୟରେ ଇମ୍ପିରିଆଲ ଗ୍ରନ୍ଥାଗାରରେ ଦିନଦିନ ଧରି ଅଧ୍ୟୟନ ମଧ୍ୟ କରୁଥିଲେ । ତଦ୍‌ବ୍ୟତୀତ ଗୋପବନ୍ଧୁ ଓଡ଼ିଶାର ଜନଜୀବନର ଅସୁବିଧା ଓ ଅଭାବଗୁଡ଼ିକ ପ୍ରତି ସଚେତନ ଥିବାର କାରଣ ଥିଲା ତାଙ୍କର ପ୍ରତ୍ୟକ୍ଷ ଅନୁଭୂତି । ସେ ଜନସେବାକୁ ଜୀବନର ବ୍ରତରୂପେ ଗ୍ରହଣ କରିନେଇଥିବାରୁ କୌଣସି ଗୋଟିଏ ସ୍ଥାନରେ ସ୍ଥିର ହୋଇ ବସି ରହିପାରୁ ନଥିଲେ । ସମସ୍ତେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଥିଲା ତାଙ୍କର କର୍ମସ୍ଥଳୀ । ବିଶେଷତଃ ବାସଗୃହ ଭାବରେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ତାଙ୍କର ନଥିଲା । କମ୍ ସମୟ ସତ୍ୟବାଦୀରେ ଓ ଅଧିକାଂଶ ସମୟ ବାହାରେ ହିଁ ରହୁଥିଲେ । ଗୋପବନ୍ଧୁଙ୍କ ସେହି ପ୍ରତ୍ୟକ୍ଷ ଅନୁଭୂତି-ସମ୍ପନ୍ନ ଭାଷଣଗୁଡ଼ିକ ବିଧାନସଭାରେ ଶିହରଣ ସୃଷ୍ଟି କରିଥିଲା । ସେ ମୂଳସୂତ୍ର ତଥ୍ୟ ସମ୍ବଳିତ ଏପରି ଅକାଟ୍ୟ ଯୁକ୍ତି ତାଙ୍କ ନିଜ ସପକ୍ଷରେ କରୁଥିଲେ ଏବଂ ପ୍ରତ୍ୟକ୍ଷ ପ୍ରମାଣ ମଧ୍ୟ ସଭାଗୃହରେ ଉପସ୍ଥାପିତ କରୁଥିଲେ ଯେ ସରକାର ସେଥିରେ ସମ୍ପୂର୍ଣ୍ଣ ବିଚଳିତ ହୋଇ ପଡୁଥିଲେ । ସେପରି ଗୋଟାଏ ଉଦାହରଣ ଉତ୍ତର ଦୁର୍ଭିକ୍ଷ । ସେ ଥିଲା ୧୯୧୯ ମସିହାର ଘଟଣା ।

ସେତେବେଳର ଜନତାର ଖାଦ୍ୟ ମୂଠିଶାଗ, କୁଣ୍ଡା ଇତ୍ୟାଦି ଲୁଗାକାନରେ ବାନ୍ଧିନେଇ ସଭାସଦଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ । ଓଡ଼ିଶାର କମିଶନର ଗ୍ରୁନିଂ ସାହେବ ସେଥିରେ କ୍ଷୁବ୍ଧ ହୋଇ କହିଥିଲେ ଯେ ଓଡ଼ିଶାର ସ୍ତ୍ରୀ ଲୋକମାନେ ସେମାନଙ୍କ ବାହୁବଳୟରେ ସୁବର୍ଣ୍ଣ

କମିଶନ ଖଣ୍ଡ ପିନ୍ଧିଥିବା ବେଳେ ଗୋପବନ୍ଧୁଙ୍କ ଯୁକ୍ତି ଏକାନ୍ତ ହାସ୍ୟାସ୍ପଦ । କିନ୍ତୁ ଗୋପବନ୍ଧୁ ତାହାଙ୍କ ଆଗରେ ଏପରି ଭାବରେ ଅକାଟ୍ୟ ଯୁକ୍ତି କରିଥିଲେ ଯେ ନିଜେ ଲାଟସାହେବ ସାର୍ ଏଡ଼ୱାର୍ଡ଼ ଗେଟ୍ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳ ପରିଦର୍ଶନ କରି କହିଥିଲେ, 'ଗୋପବନ୍ଧୁ ବାବୁ, ପ୍ରକୃତରେ ସରକାର ଯେତିକ କରିବାର କଥା ସେତିକ କରିପାରି ନାହାନ୍ତି ।"

ଲାଟସାହେବ ଉକ୍ତ ପରିଦର୍ଶନ କରି ଫେରିଗଲା ପରେ ଗୋପବନ୍ଧୁ ଜଣେ ଚିତ୍ରଶିଳ୍ପୀଙ୍କୁ ଡକାଇ ଆଣିଥିଲେ ପୁରୀରୁ ସତ୍ୟବାଦୀ । ମରୁଡ଼ି ଅଞ୍ଚଳର ଲୋକଙ୍କ ନିପୀଡ଼ିତ ଜୀବନ ସମ୍ବନ୍ଧ ଅନ୍ୟମାନଙ୍କୁ ପରିଚିତ କରାଇବା ଥିଲା ତାଙ୍କର ଉଦ୍ଦେଶ୍ୟ ।

ପ୍ରାୟ ଛଅଫୁଟ ଉଚ୍ଚର ଏକ ଛବି ତିଆର କରାଇଥିଲେ । ତାର ଦୁଇ ତିନୋଟି ନକଲ ମଧ୍ୟ ହୋଇଥିଲା ୧୯୧୯ର ଉତ୍କଳ ସମ୍ମିଳନୀରେ ସେଥିରୁ ଗୋଟିଏ ନକଲ ପ୍ରଦର୍ଶନ କରାଇଥିଲେ । ତେବେ ମୂଳଛବିଟି ବିହାର-ଓଡ଼ିଶା କାଉନ୍‌ସିଲ୍ ସଭାଗୃହରେ ଉପସ୍ଥାପିତ କରିଥିଲେ । ଦର୍ଶକଙ୍କ ସେ ଛବିର ସ୍ମୃତି ତାର ବାସ୍ତବ ଚିତ୍ରର ଧାରଣା ସୃଷ୍ଟି କରାଇ ଦେଇଥାଏ । "ଭାବିଲେ ଆଖି ଆଗରେ ସେ ଛବି ଦିଶିଯାଉଛି । ସେଥିରେ ଦଶଜଣ ଜାତକ ମଣିଷ ଥିଲେ । ସମସ୍ତଙ୍କର ହାଡ଼ କଙ୍କାଳମୟ ରୂପ, ଶୁଖୁଟା ମୁହଁ, ଡ଼ାଙ୍ଗପରି ହାତଗୋଡ଼ । କିଏ ମୁଣ୍ଡରେ ଗାମୁଛା ପକାଇଛି, କାହା ମୁଣ୍ଡବାଳ ଫୁରୁଫୁରୁ ଉଡ଼ୁଛି । କିଏ ଛିଣ୍ଡା ଲୁଗା ପିନ୍ଧିଛି । ବୁଢ଼ାଟିଏ ଠେଙ୍ଗାଟିଏ ଧରି ଠିଆ ହୋଇଛି । ଉପରେ ଘୃତ କ ଗଛନାହିଁ, ଖୋଲା ଆକାଶ, ସେମାନେ ଗୋଟାଏ ବିଲରେ ଅଛନ୍ତି । ଶୀତଦିନ ଖରାବେଳର ଦୃଶ୍ୟ । ମଲା ଧାନଗଛ ଠିଆ ହୋଇଛି । କିଏ ମାଇପେ ସେଥିରୁ ଅଗାଡି ତୋଳୁଛନ୍ତି, କିଏ ମାଇପେ ବିଲରୁ ଶାଗ ତୋଳୁଛନ୍ତି, କିଏ ନଇଁ ପଡ଼ିଛନ୍ତି, କିଏ ତଳେ ବସିଛନ୍ତି ।

ସେଥିରେ ଆଉକିଛି ନଥିଲା, ମୁଦ୍ଦାର କି ବଲୁଆ କି ଗଛ ବୁଦୁଛ ଗୋଛୁଗାଣ୍ଡି । ଖାଲି ଏତିକି ଥିଲା—ସେ ରୂପରେ, ସେ ଠାଣିରେ,

ସେ ଆଖିରେ ଥିଲା ଗୋଟାଏ ହାହାକାର, କାନ୍ଦଣାଠୁ ବଳି । ଯେ ତାଙ୍କୁ ଭୁଲିଦେବ ତା ଛାତି କରତି ହେବ, କୋହ ଉଠିବ ।

ସେଇ ଛବି ଯେମିତିକି କହୁଥିଲା, 'ଏଇଟା ଆମ ଉତ୍କଳ । କୋଠ ଦେଶ; ଓଡ଼ିଶାଯାକର ଦୁନିଆଯାକର ଖଟିଖିଆ ନିରୀହ ମଣିଷ ସଂସାରରେ ଜନମ ହୋଇଥିଲୁ । ସୁଖ କ'ଣ ଜାଣିଲୁ ନାହିଁ । ଓଃ ଆଖି ବୁଜିଦେଲେ ସେ ଛବି ଦିଶୁଛି । କେତେଥର ସ୍ୱପ୍ନରେ ଦେଖିଥିବ ସେ ଛବିକି, ନିଦ ଭାଙ୍ଗିଲେ ଲାଗିବ ଚକିଆ ଓଡା ।" (୩)

ଜନଜୀବନର ଶ୍ରେଷ୍ଠ ପ୍ରତିନିଧି ଗୋପବନ୍ଧୁ ନିଶ୍ଚିନ୍ତ ଭାବରେ କୌଣସି ସ୍ଥାନରେ ବସି ପାରୁ ନଥିଲେ ଯଦି ଖବର ପାଉଥିଲେ ଯେ କୌଣସି ସ୍ଥାନରେ କୌଣସି ପ୍ରକାର ଅସୁବିଧାର ସମ୍ମୁଖୀନ ହୋଇଛନ୍ତି । ଜନତାର ସେବାରେ ସେ ନିଜକୁ ଏପରି ଭାବରେ ନିୟୋଜିତ କରି-ଦେଇପାରୁଥିଲେ ଯେ ଅନେକ ସମୟରେ ନିଜର ଖାଦ୍ୟ ସମ୍ପର୍କରେ ସେତେଟା ସଚେତନ ହୋଇପାରୁନଥିଲେ । ଏପରିକି ହୋଇଥିଲା ଦିନକର ଖାଦ୍ୟ ଦୁଇଟି ପାଚିଲା କଦଳୀ ଯଥେଷ୍ଟ ବୋଲି ମନେ କରୁଥିଲେ । ବେଳେବେଳେ ସେଇଥିପାଇଁ ତାଙ୍କର ସ୍ୱାସ୍ଥ୍ୟହାନି ମଧ୍ୟ ହେଉଥିଲା । କିନ୍ତୁ ସେଥିପ୍ରତି ତାଙ୍କର ଭ୍ରୂକ୍ଷେପ ନଥିଲା । ତାଙ୍କର ଅତି ବିଶ୍ୱସ୍ତ ଭୃତ୍ୟ ରାମା ଅଶ୍ରାନ୍ତରେ ସ୍ମୃତି ଚାରଣ କରି କହନ୍ତି, "ଗୋପବନ୍ଧୁ କହୁଥିଲେ ରାମା ! ତୁ ବୁଝୁନାଉଁ । ଏ ଦେହଟା କିଏ ମୁଁ ? ଏଇଟା ମୋ ବାହନ, ଯେମିତି ଗୋଟାଏ ଘୋଡ଼ା, ଯାକୁ ମୋତେ ଭଗବାନ ଦେଇଛନ୍ତି, ଯାକୁ ମୁଁ କାମ କରାଇବି ବୋଲି । ଯାକୁ ଖୁଣ୍ଟାରେ ପୋଷୁଥିବି କାହିଁକି ? କାମ କରି ନପାରିବ ଯେ ଗଲେ ଯାଉ ।"

ଓଡ଼ିଆ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ତଥା ଅଭାବ ଅସୁବିଧା ଓ ଅସନ୍ତୋଷର ମତପ୍ରକାଶ ଲାଗି କେବଳ ମାତ୍ର ସାପ୍ତାହିକ ସମ୍ବାଦପତ୍ର "ଆଶା" ପ୍ରକାଶ ପାଉଥିଲା ବ୍ରହ୍ମପୁରରୁ । ପଣ୍ଡିତ ଗୋପବନ୍ଧୁ 'ଆଶା'ର

---

(୩) ଗୋପୀନାଥ ମହାନ୍ତି—ଉତ୍କଳମଣି ପୃ ୮୬-୮୭

ପ୍ରକାଶ କାଳରୁ ସେଥି ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । କଟକରୁ ସେତେବେଳେ ଶ୍ରୀଯୁକ୍ତ ଗୌରୀଶଙ୍କର ରାୟଙ୍କ ସଂପାଦନାରେ ପ୍ରକାଶ ପାଉଥିବା ଉତ୍କଳ ଦୀପିକା ଯୁବକମାନଙ୍କ ବୈପ୍ଳବାତ୍ମକ ଚିନ୍ତାଧାରା ସହିତ ଖାପ ଖୁଆଇ ଚାଲିପାରୁନଥିଲା । ଗୋପବନ୍ଧୁ ଇତିମଧ୍ୟରେ "ସତ୍ୟବାଦୀ" ନାମରେ ଏକ ସାହିତ୍ୟ ପତ୍ରିକା ମଧ୍ୟ ସଂପାଦନା କରୁଥିଲେ ।

ତେବେ ଓଡ଼ିଆମାନଙ୍କ ଆବଶ୍ୟକତା ତୁଳନାରେ ସେସବୁ ପତ୍ରିକା ଥିଲା ସମୁଦ୍ରକୁ ଟିକିଏ ପଣାପରି । ତେଣୁ ଆଉ ଖଣ୍ଡିଏ ସମ୍ବାଦପତ୍ର ପ୍ରକାଶ କରିବା ପାଇଁ ମନସ୍ଥ କରିଥିଲେ ପଣ୍ଡିତ ଗୋପବନ୍ଧୁ । ସେଇ ଉଦ୍ଦେଶ୍ୟରେ ପୁରୀର ଏମାର ମଠ ମହାନ୍ତଙ୍କଠାରୁ ଖଣ୍ଡିଏ ଫ୍ଲେଟ ହାତଚଳିତ ପ୍ରେସ୍ ନେଇ ସେ ସତ୍ୟବାଦୀଠାରେ ପ୍ରତିଷ୍ଠା କରିଥିଲେ ଏବଂ ୧୯୧୯ ମସିହା ଅକ୍ଟୋବର ୪ ତାରିଖ ପୁଣ୍ୟପବିତ୍ର ଦଶହରା ଦିନ "ସମାଜ" ପ୍ରକାଶନ ଆରମ୍ଭ କରିଥିଲେ । ସେତେବେଳେ ସମାଜ ସାପ୍ତାହିକ ସମ୍ବାଦପତ୍ର ହିସାବରେ ପ୍ରଥମ ପ୍ରକାଶ ଲାଭ କରିଥିଲା । ତତ୍କାଳୀନ ଜନଜୀବନର ଆଶା ଆକାଂକ୍ଷାର ସ୍ୱାକ୍ଷର ବହନ କରି ସମାଜ ସେତେବେଳେ ଏତେ ଜନପ୍ରିୟ ହୋଇ ପାରିଥିଲା ଯେ ଆଜି ପର୍ଯ୍ୟନ୍ତ ଗାଁ ଗହଳର ଲୋକେ ଯେ କୌଣସି ସମ୍ବାଦପତ୍ରକୁ ସମାଜ ବୋଲି ହିଁ କହିଥାନ୍ତି । ସେ ଦିନର ସେହି ସମାଜ ସତ୍ୟବାଦୀରୁ ୧୯୨୪ ମସିହାରେ ପୁରୀ ଓ ତା ପରେ ୧୯୨୭ ମସିହାରେ କଟକ ଯାଇ ଆଜି ଦୈନିକ ଦୁଇଟି ସଂସ୍କରଣ ପ୍ରକାଶ ପାଉଛି ଏବଂ ତାହା ସର୍ବାଧିକ ପ୍ରଚଳନ ଥିବା ଓଡ଼ିଆ ଦୈନିକ ପତ୍ରିକା ।

୧୯୦୩ ମସିହାରେ ଉତ୍କଳ ସମ୍ମିଳନୀର ଆରମ୍ଭଠାରୁ ଉତ୍କଳମଣି ସେଥି ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ ଦୀର୍ଘ ୨୦ ବର୍ଷ ପର୍ଯ୍ୟନ୍ତ । ସମ୍ମିଳନୀର ଆରମ୍ଭ ହେବା ବେଳକୁ ସେ ଥିଲେ ଜଣେ ଉଦୀୟମାନ, ସ୍ୱଦେଶବୋଧ ଜାତୀୟ ମମତାରେ ଭରପୁର ଯୁବକ । ସେହିଠାରୁ ପ୍ରାୟ ମୃତ୍ୟୁ ପର୍ଯ୍ୟନ୍ତ ସେ ଅନୁଷ୍ଠାନ ସହିତ ଜଡ଼ିତ ଥିଲେ ।

"ଦେଶାନୁରାଗ ବିଶ୍ୱପ୍ରୀତିର ବିରୋଧୀ ନୁହେ ବରଂ ବିଶ୍ୱପ୍ରୀତିବିହୀନ ସ୍ଥାନରେ ଜାତୀୟତା ଏବଂ ସ୍ୱଦେଶବାତ୍ସଲ୍ୟ ଅସମ୍ଭବ ।" ଗୋପବନ୍ଧୁଙ୍କ ମତ

ଥିଲା ସ୍ୱଦେଶପ୍ରୀତିର ଅର୍ଥ କେବଳ ଓଡ଼ିଶାକୁ ବା ଭାରତକୁ ଭଲ ପାଇବା ନୁହେଁ । ସ୍ୱଦେଶ ପ୍ରୀତି ବା ଜାତୀୟ ମମତାର ଅର୍ଥ ତାଙ୍କ ଲାଗି ଥିଲା ଭାରତୀୟ ପୃଷ୍ଠଭୂମିରେ ସମଗ୍ର ବିଶ୍ୱକୁ ଆପଣାର ମନେ କରିବା । "ଜାତୀୟ ମମତା ବିଶ୍ୱଜନ ପ୍ରୀତି"କୁ ହିଁ ଉତ୍କଳବାସୀଙ୍କ ମନ୍ତ୍ର ହେବା ଲାଗି ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଥିଲେ ।

ସେହି ଦୃଷ୍ଟିରୁ ଉତ୍କଳ ସମ୍ମିଳନୀର କାର୍ଯ୍ୟ ପରିସର ସମ୍ପର୍କରେ ସେ ମନ୍ତବ୍ୟକ୍ତ କରିଥିଲେ "ଓଡ଼ିଶା ଭାଷୀ ପ୍ରଦେଶର ମିଳନ ସମ୍ମିଳନୀର ଅବାନ୍ତର ଫଳ ।" ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏହି ସମ୍ମିଳନୀର ପ୍ରଥମ ଅଧିବେଶନ ଯେତେବେଳେ ୧୯୦୩ ମସିହା ଡିସେମ୍ବର ୩୦ ତାରିଖ ବୁଧବାରେ କଟକଠାରେ ଅନୁଷ୍ଠିତ ହୋଇଥିଲା ତାର ବିବରଣୀରେ ଉଲ୍ଲେଖ କରାଯାଇଥିଲା "ଏ ସମ୍ମିଳନୀର ନାମ ଉତ୍କଳ ସମ୍ମିଳନୀ । ଏଥିରେ ସମସ୍ତ ଉତ୍କଳ ଭାଷାଭାଷୀ ଅଞ୍ଚଳର ମଙ୍ଗଳଜନକ ପ୍ରସ୍ତାବମାନ ପ୍ରସ୍ତାବିତ ହୋଇ କାର୍ଯ୍ୟରେ ପରିଣତ ହେବ ।" ତାର ଅର୍ଥ ନଥିଲା କେବଳ ଦେଶ ମିଶ୍ରଣ କାର୍ଯ୍ୟ ଲାଗି ଉତ୍କଳର ଏହି ଅନୁଷ୍ଠାନ କାର୍ଯ୍ୟ କରିବ । ସେତେବେଳେ ଓଡ଼ିଆମାନଙ୍କ ଏକତ୍ରିକରଣର ଆବଶ୍ୟକତା ଦୃଷ୍ଟିରୁ ତାହା ଥିଲା ଗୋଟିଏ ମଙ୍ଗଳଜନକ ପ୍ରସ୍ତାବ । ସେ ପ୍ରସ୍ତାବ ସଂପର୍କରେ ମଧ୍ୟ ସେହି ଏକ ବିବରଣୀରେ ଉଲ୍ଲେଖ ରହିଥିଲା ଯେ ସେତେବେଳେ; ଇଂରେଜ ସରକାରଙ୍କ ଅମଳରେ ଓଡ଼ିଶାର ଭୌଗୋଳିକ ସୀମା ଅସମ୍ଭବ ରକମ କମି ଯାଇଥିଲା ଏବଂ ଓଡ଼ିଶା ବାହାରେ ଥିବା ସମ୍ବଲପୁର, ଛୋଟନାଗପୁର, ମେଦିନୀପୁର, ଗଞ୍ଜାମ ଇତ୍ୟାଦି ସ୍ଥାନମାନଙ୍କରେ ଅଧିକାଂଶ ଲୋକଥିଲେ ଓଡ଼ିଆ । ସେ ସମସ୍ତ ଅଞ୍ଚଳକୁ ଓଡ଼ିଶା ବୋଲି ମନେ କରାଯାଇଥିଲା ଏବଂ ସେହି କାରଣରୁ ସେହି ସମ୍ମିଳନୀର ନାମ ଉତ୍କଳ ସମ୍ମିଳନୀ ବୋଲି ନାମିତ ହୋଇଥିଲା ।

୧୯୧୯ ମସିହା ଅପ୍ରେଲ ୧୯ ତାରିଖରେ ସେହି ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ସଭାପତି ଆସନରୁ ଗୋପବନ୍ଧୁଙ୍କ ଘୋଷଣା ଥିଲା "ଖଣ୍ଡବିଖଣ୍ଡିତ ହେଲେ ସୁଦ୍ଧା ଓଡ଼ିଆ ଜାତି ବର୍ତ୍ତମାନ ବିଦ୍ୟମାନ ରହିଛି । ରାଜନୈତିକ ଶିକୁଳି ତାହାକୁ ବାହ୍ୟ କଳେବରରେ ବିଭିନ୍ନ

ଘଟାଇଛୁ, ମାତ୍ର ଜାତୀୟ ଆତ୍ମା ଅଦ୍ୟାପି ଅକ୍ଷୁଣ୍ଣ × × × ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ଏହି ଅଖଣ୍ଡ ଅବିନଶ୍ୱର ଆତ୍ମାର ଇନ୍ଦ୍ରିୟଗ୍ରାହ୍ୟ ମୂର୍ତ୍ତି, ସୁତରାଂ ଆମ୍ଭମାନଙ୍କର ଜାତୀୟ ଆକାଂକ୍ଷାର ପ୍ରକାଶକ ।''

ଗୋପବନ୍ଧୁ ବୁଝିଥିଲେ, ବରଂ ଓଡ଼ିଆ ଜନଗଣଙ୍କୁ ଆହ୍ୱାନ ଦେଇଥିଲେ । ଆମ୍ଭମାନଙ୍କ ଜାତୀୟ ଆକାଂକ୍ଷା ଭାରତୀୟ ଜନଗଣଙ୍କ ଜୀବନଯାତ୍ରା ସହିତ ପାଦ ମିଳାଇ ଚାଲିପାରିଲେ ହିଁ ପୂର୍ଣ୍ଣ ହେବ । ତାଙ୍କର ଦୃଷ୍ଟି ମତ ଥିଲା ସଙ୍କୀର୍ଣ୍ଣ ପରିସୀମା ଭିତରେ ଆବଦ୍ଧ ରହିଲେ ଜାତୀୟତାର ପୂର୍ଣ୍ଣ ବିକାଶ କଦାପି ସମ୍ଭବ ନୁହେଁ । ଜଣେ ଯେଉଁ ଜାତିର ହୁଅନ୍ତୁ ପଛକେ ସେ ଜଣେ ମଣିଷ ଏବଂ ସର୍ବମୟ କର୍ତ୍ତା ଭଗବାନଙ୍କ ସନ୍ତାନ । ତେଣୁ ପ୍ରତ୍ୟେକେ ପ୍ରତ୍ୟେକଙ୍କ ହୃଦୟରେ ଭ୍ରାତୃଭାବ ବର୍ଦ୍ଧନ ନକଲେ ଜାତୀୟ ଜୀବନ କଳୁଷିତ ହେବ । ତାଙ୍କ ମତରେ ''ମାନବ ସେବାହିଁ ଭଗବତ୍ ସେବା । ମାତ୍ର ବ୍ୟକ୍ତିବିଶେଷର ଶକ୍ତି କ୍ଷୀଣ, ବାହୁ କ୍ଷୁଦ୍ର, ଦୃଷ୍ଟି ସଙ୍କୀର୍ଣ୍ଣ, ଗତି ସୀମାବଦ୍ଧ । ସୁତରାଂ ବିଶ୍ୱଜନନୀ ସମଗ୍ର ମାନବ ସମାଜର ସେବା ତା ପକ୍ଷରେ ଅସମ୍ଭବ । ସେ ଯେଉଁ ନିର୍ଦ୍ଦିଷ୍ଟ ଦେଶରେ ଜାତି ମଧ୍ୟରେ ବାସ କରନ୍ତି, ସେହି ଦେଶ ତାଙ୍କର ପୂଜାପୀଠ ଏବଂ ସେହି ଜାତିର ସେବାହିଁ ତାଙ୍କର ମାନବ ସେବା ।''

ଓଡ଼ିଶା ଭାରତରେ ଏକ ଅଂଶ ମାତ୍ର ହୋଇଥିବାରୁ ମହା ଭାରତୀୟ ଭାବରେ ଉଦ୍‌ବୁଦ୍ଧ କରାଇବା ଲାଗି ଗୋପବନ୍ଧୁ ଚେଷ୍ଟା କରିଥିଲେ । ୧୯୧୯ ମସିହାରେ ଉତ୍କଳ ସମ୍ମିଳନୀର ସଭାପତି ଭାବେ ସଭା ମଞ୍ଚରୁ ସେ ତାଙ୍କ ଅଭିଭାଷଣରେ କହିଥିଲେ, ''ସମଗ୍ର ଭାରତର ଆନ୍ଦୋଳନରେ ଭାରତ ଯାହା ସମ୍ପଦ ଭାବରେ ଲାଭ କରିଛି ଓଡ଼ିଶା ବା ଓଡ଼ିଆ ଜାତି ତା'ର ଫଳଭୋଗୀ ହେଉନାହାନ୍ତି କି ? ଅତଏବ ଭାରତୀୟ ଆକାଂକ୍ଷା ସଙ୍ଗେ ଆମ୍ଭମାନଙ୍କ ଜାତୀୟ ଆକାଂକ୍ଷା ମିଳାଇ ସମଗ୍ର ଭାରତ ମହାଜାତିର କଲ୍ୟାଣରେ ଯଥାଶକ୍ତି ଆତ୍ମନିୟୋଗ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।''

ତାହା ପୂର୍ବରୁ ଉତ୍କଳ ସମ୍ମିଳନୀ ଭାରତୀୟ ରାଜନୀତି ସହିତ କୌଣସି ସମ୍ପର୍କ ସ୍ଥାପନ କରିନଥିଲା । ତେଣୁ ଗୋପବନ୍ଧୁ ବନ୍ଧନ ମୁକ୍ତ କରିଥିଲେ ଭାରତୀୟ ଜାତୀୟ ସଂଗ୍ରାମ ସହିତ ନିଜକୁ ସାମିଲ କରାଇବା ପାଇଁ । ସେହି କାରଣରୁ ତାଙ୍କର ଅନ୍ୟ କେତେକ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହିତ ମତପାର୍ଥକ୍ୟ ହୋଇଥିଲା । ଅନ୍ୟ କେତେଜଣ ମନେ କରିଥିଲେ ଭାରତୀୟ ରାଜନୀତି ସହିତ ସମ୍ପର୍କ ସ୍ଥାପନ କଲେ ଉତ୍କଳ ସମ୍ମିଳନୀ ଲୋପ ପାଇଯାଇପାରେ । ତେଣୁ ୧୯୧୯ ମସିହା ଉତ୍କଳ ସମ୍ମିଳନୀରେ କୌଣସି ନିର୍ଦ୍ଦିଷ୍ଟ ପ୍ରସ୍ତାବ ଗୃହୀତ ହୋଇ ପାରିନଥିଲା ।

ତେବେ ୧୯୨୦ ମସିହା ନାଗପୁର କଂଗ୍ରେସ ଅଧିବେଶନରେ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶରୂପେ ଗ୍ରହଣ କରାଯାଇଥିଲା ଏବଂ ତା ପରେ ଗୋପବନ୍ଧୁଙ୍କ ଉଦ୍ୟମ ସଫଳ ହୋଇଥିଲା । ୧୯୨୦ ମସିହା ଡିସେମ୍ବର ୩୦ ତାରିଖରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ହୋଇଥିଲା ଚକ୍ରଧରପୁରଠାରେ । ସଭାପତି ହୋଇଥିଲେ ଜଗବନ୍ଧୁ ସିଂହ । ଗୋପବନ୍ଧୁ ସେଇଠି ପ୍ରସ୍ତାବ କରିଥିଲେ, "ସମ୍ମିଳନୀର ବର୍ତ୍ତମାନ ଉଦ୍ଦେଶ୍ୟ ଯେ ନିରୂପିତ ହୋଇଛି, ତାହା ସ୍ଥିର ରଖାଯାଇ, ଭାରତ ଜାତୀୟ ମହାସମିତିର ଯେ ଉଦ୍ଦେଶ୍ୟ ଓ ଆକାଂକ୍ଷା, ତାହା ଏହି ସମ୍ମିଳନୀର ଉଦ୍ଦେଶ୍ୟ ଓ ଆକାଂକ୍ଷା ରୂପେ ଗୃହୀତ ହେଉ ।" ଏ ପ୍ରସ୍ତାବର ଅନୁମୋଦକ ଥିଲେ ସମ୍ବଲପୁରର ଅନ୍ୟତମ ଜାତୀୟବାଦୀ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ବେହେରା ।

ସେଠାରେ ସେ ପ୍ରସ୍ତାବ ଗୃହୀତ ହୋଇଥିଲା । ଭାରତୀୟ ଜାତୀୟ ମହାସମିତିର ଉଦ୍ଦେଶ୍ୟ ଅସହଯୋଗଦ୍ୱାରା ଦେଶର ସ୍ୱରାଜ୍ୟ ପ୍ରାପ୍ତିକୁ ଉତ୍କଳ ସମ୍ମିଳନୀ ଅନ୍ୟତମ ଉଦ୍ଦେଶ୍ୟ ରୂପେ ଗ୍ରହଣ କରି ନେଇଥିଲା ।

ଗୋପବନ୍ଧୁଙ୍କ ଏ ଅଦମ୍ୟ ଚେଷ୍ଟାର ପରିଣାମରେ ଯେତେବେଳେ ୧୯୨୧ ମସିହା ମାର୍ଚ୍ଚ ମାସରେ ବେଜଓ୍ୱାଡ଼ାଠାରେ ନିଖିଳ ଭାରତ କଂଗ୍ରେସ କମିଟିର ବୈଠକ ବସିଥିଲା ସେଥିରେ ସାତଜଣ ଓଡ଼ିଆ ସଦସ୍ୟ ମନୋନୀତ ଭାବେ ଓଡ଼ିଶାର ପ୍ରତିନିଧି ହିସାବରେ ସ୍ଥାନ ପାଇଥିଲେ ।



॥ ସାତ ॥

# ଜୀବନ କି ଖାଲି ନିରାଶାର ବାଲି

ଜାତୀୟ ଚିନ୍ତା ଓ ଚେତନାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ସତ୍ୟବାଦୀର ବନବିଦ୍ୟାଳୟ ପରେ ପରେ ଜାତୀୟ ବିଦ୍ୟାପୀଠ ତଥା ଜାତୀୟ ମହାବିଦ୍ୟାଳୟରେ ପରିଣତ ହେବାର ମାତ୍ର କେତୋଟି ମାସର ବ୍ୟବଧାନ ମଧ୍ୟରେ ଇତିହାସର ଫସିଲ ହୋଇଥିଲା ।

ଗୋପବନ୍ଧୁଙ୍କର ମନୀଷ ଗଢ଼ା କାରଖାନା ବନ ବିଦ୍ୟାଳୟ— ସେତେବେଳର ଭାରତ ସରକାରଙ୍କ ସନ୍ଦେହର ଥିଲା କେନ୍ଦ୍ରସ୍ଥଳ, ଓଡ଼ିଶା ପାଇଁ । ସରକାର ମନେ କରୁଥିଲେ ଯେ ସତ୍ୟବାଦୀରେ ସରକାରୀ ବିରୋଧୀ କାର୍ଯ୍ୟକଳାପକୁ ଯଥେଷ୍ଟ ପ୍ରଶ୍ରୟ ଦିଆଯାଉଛି । ଏପରିକି ସରକାରକୁ ଅଚଳ କରାଇବା ଉଦ୍ଦେଶ୍ୟ ନେଇ ଯେଉଁଠାରେ ବୋମା ଇତ୍ୟାଦି ମାରଣାସ୍ତ୍ର ମଧ୍ୟ ତିଆର କରାଯାଉଛି ଗୁପ୍ତରେ । ସେ ସନ୍ଦେହର ଅନ୍ୟତମ କାରଣ ଥିଲା ଗୋପବନ୍ଧୁ, ଗୋଦାବରୀଶ ତଥା ସେମାନଙ୍କ ଦଳୀୟ ଲୋକଙ୍କ ବଙ୍ଗଳାର ସନ୍ତ୍ରାସବାଦୀ ଗୋଷ୍ଠୀ ସହିତ ଗୋପନ ସମ୍ପର୍କ । ବଙ୍ଗଳାର ସନ୍ତ୍ରାସବାଦୀ ଦଳଙ୍କ କାର୍ଯ୍ୟକଳାପର ପରିସୀମା ଥିଲା ଏ ଦେଶରୁ ଇଂରେଜ ସରକାରଙ୍କୁ ତଡ଼ିବା । ଦରକାର ମନେ ହେଲେ ଗୋରା ହାକିମଙ୍କୁ ବୋମା ମାଡ଼ରେ ହେଉ ବା ଯେ କୌଣସି ପ୍ରକାର ହେଉ ହତ୍ୟା କରିବା ଓ ଫଳତଃ ସରକାରୀ କାର୍ଯ୍ୟକଳାପକୁ ଅକାମୀ କରିବା । ତେଣୁ ପ୍ରକୃତରେ ସେ ପ୍ରକାର କାର୍ଯ୍ୟକଳାପ କିଛି ସତ୍ୟବାଦୀରେ ହେଉଛି କି ନା ତାର ପୁଙ୍ଖାନୁପୁଙ୍ଖ ତଦନ୍ତ କରିବା ପାଇଁ ଗୁପ୍ତଚର ସି. ଆଇ. ଡ଼. ମାନେ ନିଯୁକ୍ତ ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରେ ସ୍ୱୟଂ ଗୋପବନ୍ଧୁଙ୍କର ସହପାଠୀମାନେ ମଧ୍ୟ ଥିଲେ ।

ସ୍କୁଲ ମଞ୍ଜୁରୀ ପାଇବା ପରେ ଥରେ ବଙ୍ଗ ବିହାର-ଓଡ଼ିଶାର ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର ଏଡ୍‌ୱାର୍ଡ ଗେଟ୍ ସତ୍ୟବାଦୀ ସ୍କୁଲ ପରିଦର୍ଶନରେ ଆସି ସେଠା କାର୍ଯ୍ୟକଳାପରେ ଏତେଟା ଆତ୍ମସନ୍ତୋଷ ଲାଭ କରିଥିଲେ ଯେ ସେ କହି ପକାଇଥିଲେ, "ଗୋପବନ୍ଧୁ ବାବୁ ଆପଣଙ୍କ ସ୍କୁଲ ବିରୁଦ୍ଧରେ ଗୋଇନ୍ଦା ଯେଉଁ ରିପୋର୍ଟ କରିଛନ୍ତି ତାହା ପ୍ରାପ୍ତ ଆଣୁ ଏ ଉଛ । ଏବେ ମୁଁ ବୁଝିଗଲି । ଯାଉଛି, ତାହାସବୁ ନଷ୍ଟ କରିବାକୁ ଆଦେଶ ଦେବି ।" (୧)

ଗୋପବନ୍ଧୁଙ୍କର ସତ୍ୟବାଦୀ ପରିକଳ୍ପନା କରିବାର ଉଦ୍ଦେଶ୍ୟ ଯଦିଓ ଦେଶରେ ସ୍ୱାଧୀନତା ଥିଲା ତଥାପି କର୍ମପନ୍ଥା ଥିଲା ଅନ୍ୟ ପର୍ଯ୍ୟାୟଭୁକ୍ତ । ପ୍ରକୃତ ମଣିଷ ସୃଷ୍ଟି କରି ସେମାନଙ୍କୁ ସେମାନଙ୍କ ଦାୟିତ୍ୱ ତଥା କର୍ତ୍ତବ୍ୟ ସମ୍ପର୍କରେ ସଚେତନ କରାଇବା ଲକ୍ଷ୍ୟ ନେଇ ସେମାନେ ଆଗେଇ ଚାଲିଥିଲେ । ସେଥିପାଇଁ ୧୯୧୦ ମସିହା ପୁରୀ ଉତ୍କଳ ସମ୍ମିଳନୀରେ ଗୋପବନ୍ଧୁ ଘୋଷଣା କରିଥିଲେ, "ଆମ୍ଭେମାନେ ମନୁଷ୍ୟର ସେବା କରୁଅଛୁ; ମାତ୍ର ସେଥିରେ ଇଷ୍ଟ କି ଅନିଷ୍ଟ ଅଛି ସେଥିପ୍ରତି ତିଳେମାତ୍ର ଭ୍ରୂକ୍ଷେପ କରୁନାହୁଁ । ଆମ୍ଭେମାନେ ବିଶ୍ୱାସ କରୁ ଯେ ମାନବ ସେବା ହିଁ ଭଗବାନଙ୍କ ସେବା ଏବଂ ତାହା ହିଁ ପ୍ରତ୍ୟେକ ମାନବର କର୍ତ୍ତବ୍ୟ" ଏବଂ ସେହି ସମ୍ମିଳନୀରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ଏମାନଙ୍କ (ସତ୍ୟବାଦୀ ଗୋଷ୍ଠୀ) ଉଦ୍ୟମ ଫଳରେ ଦେଶର ଯୁବକମାନଙ୍କ ହୃଦୟରେ ପ୍ରାଣବ୍ରହ୍ମ ପ୍ରତିଷ୍ଠିତ ହୋଇ ସେମାନଙ୍କୁ ପବିତ୍ର ମନୁଷ୍ୟତାରେ ଜାଜ୍ୱଲ୍ୟମାନ କରିବ ।" (୨)

ସେ ମହତ୍ ଉଦ୍ଦେଶ୍ୟ ନେଇ ଗଠିତ ୧୯୦୯ ମସିହା ଅଗଷ୍ଟ ୧୨ ତାରିଖ କୁମାର ପୂର୍ଣ୍ଣମୀ ଦିନ ଆରମ୍ଭ ହୋଇଥିବା ସତ୍ୟବାଦୀ ହାଇକର ସ୍କୁଲ ୧୯୧୦ ମସିହାରେ ଶିକ୍ଷା ବିଭାଗର ମଞ୍ଜୁରୀ ପାଇଥିଲା । ୧୯୧୧ରେ ପଣ୍ଡିତ ନୀଳକଣ୍ଠଙ୍କ ପରେ ସ୍ୱର୍ଗୀୟ ରାମଚନ୍ଦ୍ର ରଥ ଖୋର୍ଦ୍ଧା କଚେରୀରୁ

(୧) ଆତ୍ମଜୀବନୀ—ପଣ୍ଡିତ ନୀଳକଣ୍ଠ, ପୃ ୨୭୨
(୨) ସତ୍ୟବାଦୀ ଯୁଗ—ଶ୍ରୀ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ, ପୃ ୧୯

ସରକାରୀ କାର୍ଯ୍ୟ ତ୍ୟାଗ କରି ବିଦ୍ୟାଳୟରେ ଯୋଗ ଦେଇଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ଆଦର୍ଶ ତାହାଙ୍କୁ ଅନୁପ୍ରାଣିତ କରିଥିଲା କିଶୋର ବୟସରୁ । ଯେତେବେଳେ ଥରେ ସେ ତାଙ୍କର ବିଦ୍ୟାଶିକ୍ଷା କରିବାବେଳେ ଗୋପବନ୍ଧୁଙ୍କୁ ନିଜର ଧନାଭାବ କଥା ଜଣାଇଥିଲେ । ନିଜେ ଖଟି, ରୋଜଗାର କରି ପାଠ ପଢ଼ିବା ପାଇଁ ଉପଦେଶ ଦେଇଥିଲେ ସେ । ତାଙ୍କର ପ୍ରେରଣାରେ ରେଳଷ୍ଟେସନ୍‌ରୁ ବୋଝ ବୋହି, ଏପରିକି ଶୁଖୁଆ ବେଙ୍ଗ ମାଛ ଛୁଅଁଇବା ପାଇଁ ପୁରୀ ସହରକୁ ବୋହିନେଇ ସେ ସ୍ୱଅର୍ଜିତ ଧନରେ ବିଦ୍ୟାଳାଭ କରିବା ନିଷ୍ପତ୍ତି ନେଇଥିଲେ ।

ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ପ୍ୟାରିମୋହନ ଏକାଡ଼େମୀରେ ଶିକ୍ଷକତା ତ୍ୟାଗକରି ବକୁଳ ବନ ବିଦ୍ୟାଳୟରେ ଯୋଗ ଦେଇଥିଲେ ଆଚାର୍ଯ୍ୟ ହରିହର ।

ଗୋପବନ୍ଧୁଙ୍କ ଲାଗି ସତ୍ୟବାଦୀରେ ଗୋଟିଏ ଗୃହ ନିର୍ମାଣ କରାଯାଇଥିଲା ଏବଂ ଅଲଗା ଗୃହ ନିର୍ମାଣ ହେବା ପର୍ଯ୍ୟନ୍ତ ନୀଳକଣ୍ଠ ମଧ୍ୟ ସେଇ ଗୋଟିଏ ଘରେ ରହୁଥିଲେ । ସବୁବେଳ ତ ସେଠି ରହୁ ନଥିଲେ; ହେଲେ ଆପଣେ ଯେତେବେଳେ ଆସି ସତ୍ୟବାଦୀର ସ୍କୁଲ ଫାଟକ ନିକଟରେ ପହଞ୍ଚୁଥିଲେ, ଶିକ୍ଷକବୃନ୍ଦ ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ହରିହର ପ୍ରମୁଖମାନେ ଯାଇ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରୁଥିଲେ ଓ ପାଛୋଟି ଆଣୁଥିଲେ । ତାହାଥିଲା ଗୋପବନ୍ଧୁଙ୍କ ପ୍ରତି ସେମାନଙ୍କ ଅସୀମ ଭକ୍ତିର ପରମ ନିଦର୍ଶନ ।

ସତ୍ୟବାଦୀରେ ଥିବା ଦିନଚକ ଚରିଚରିତ ଅଭ୍ୟାସବଶତଃ ପ୍ରତିଦିନ ବଡ଼ଭୋରରୁ ଉଠୁଥିଲେ ଓ ଚନ୍ଦନ ପୋଖରୀରେ ସ୍ନାନ ଶେଷକରି ମଠା ଖଣ୍ଡିଏ ପିନ୍ଧି ଉଦୟ ଆଲୋକ ପୂର୍ବରୁ ସାକ୍ଷୀଗୋପାଳ ମନ୍ଦିରକୁ ଯାଉଥିଲେ ହରି ଦର୍ଶନ କରି । ସେଠାରୁ ଫେରିବା ପରେ ପରେ ଗୀତା ପାଠ । ତା ପରେ ଅନ୍ୟ କର୍ମ ।

ଖିଅରିବାର ହେବା ଗ୍ରୁଡ ଦେଇଥିଲେ ଅନେକ ଦିନୁ । ମୁଣ୍ଡ କୁଣ୍ଡାଇବା ଲାଗି ପାନିଆ ନରଖି ରଖିଥିଲେ ଖଣ୍ଡିଏ ବ୍ରସ । ବାଳ କାଟିବା

ବେଳେ ସେ ଗ୍ରେଞ୍ଚ ଗ୍ରେଞ୍ଚ କରି ବାଜ କାଟି ପକାଉଥିଲେ । ଯୋଗୀ ମୁନିମାନଙ୍କ ଭଳି ଉଦ୍ଧୃଥିଲେ ମଧ୍ୟ ଯୋଗ, ଆସନ, ପ୍ରାଣାୟାମ ଇତ୍ୟାଦି କୌଣସି ପ୍ରତି ଅନୁରାଗ ନଥିଲା କି ମାଟି ହାଣିବା, କୋଡ଼ି ଖୋଳିବା ଦୈହିକ ପରିଶ୍ରମ ମଧ୍ୟ କରୁନଥିଲେ ଆବଶ୍ୟକ ନ ପଡ଼ିଲେ । ଏଠି ମନେ ରଖିବାର କଥା ବଡ଼ି ମରୁଡ଼ି ସମୟରେ ଦିନ ଦିନ ରାତି ରାତି ଧରି ପ୍ରପୀଡ଼ିତ ଜନସମାଜର ସେବା କରିବା ପାଇଁ ତାଙ୍କର ତିଳେ ମାତ୍ର କୁଣ୍ଠା ନଥିଲା । ପାଣି, କାଦୁଅ, ମଇଳା, ଦୁର୍ଗନ୍ଧ, ରୋଗ, ଶୋଷ ସବୁ ଭୁଲି ଯାଉଥିଲେ ସେତିକବେଳେ । "ଲୁହରେ ଲୁହ ମିଶାଇ" ସ୍ୱିଁ ସେ ଯଥାର୍ଥରେ "ମଣିଷ ଭାଇ" କଳନା କରୁଥିଲେ ।

ମନ୍ଦିରରେ ଗୋପୀନାଥଙ୍କ ଦର୍ଶନ କରିସାରି ଫେରିବା ପରେ ପରେ ଗୀତା ପାଠ ଓ ତା ପରେ ତାଙ୍କର ସକାଳ ବେଳର ଜଳଖିଆ—ପ୍ରାୟତଃ ଥିଲା ଟିକିଏ ଦହି ଓ କିଛି ଚୂଡ଼ା । ତା ପରେ ନିତ୍ୟ ନୈମିତ୍ତିକ କାର୍ଯ୍ୟ ଲେଖାଲେଖି ।

ଘର ବାରଣ୍ଡାରେ ଖଣ୍ଡିଏ ଆରାମ ଚୌକି ଉପରେ ବସୁଥିଲେ । ତାହାହିଁ ତାଙ୍କର ଚୌକି ଓ ଟେବୁଲ ଉଭୟ । ସତ୍ୟବାଦୀରେ ଥିବା ଦିନ-ଗୁଡ଼ିକରେ ପ୍ରାୟ ସକାଳ ସାଢ଼େ ଛଅରୁ ସାଢ଼େ ଦଶ ଲେଖାଲେଖି ଚାଲେ । ମଝିରେ ମଝିରେ ଚିନ୍ତା କରୁଥିଲେ ଓ ତା ପରେ ଲେଖି ଯାଉଥିଲେ । ତା ପରେ ପୁଣି ବିଗତ ଅନୁଭୂତିର ଅନୁଶୀଳନ । ପୁଣି ଲେଖା ତା ପରେ । ଘଣ୍ଟା ପରେ ଘଣ୍ଟା ସେଇମିତି କଟି ଯାଉଥିଲା । ବେଳେବେଳେ ମୁହଁରେ ଭାବନାର ସ୍ପଷ୍ଟ ରୂପ ଫୁଟି ଉଠୁଥିଲା । ଆଉ ବେଳେବେଳେ ଆଖିରୁ ଧାର ଧାର ଲୁହ ବି ଗଡ଼ିଯାଉଥିଲା । ଅନେକ ସମୟରେ ସେ ଭାବାବିଷ୍ଟ ହୋଇ ପଡ଼ୁଥିଲେ ।

ଦିନରେ ପ୍ରାୟ ୧୫, ୨୦ ଖଣ୍ଡ ଚିଠି ପାଉଥିଲେ ଗୋପବନ୍ଧୁ । ଫାଉଣ୍ଟେନ୍ ପେନ୍ ପରେ ପରେ ବ୍ୟବହାର କରିଥିଲେ ମଧ୍ୟ ତାଙ୍କର ପ୍ରିୟ ଥିଲା ପକ୍ଷୀ କଲମ । ବେଳେବେଳେ କାଠି କଲମ ମଧ୍ୟ ବ୍ୟବହାର

କରୁଥିଲେ । ଲେଖା, ଲେଖା, ଲେଖା । ସକାଳ ସାଢ଼େ ଛଅରୁ ପ୍ରାୟ ସାଢ଼େ ଦଶ । ଖାଇବା ସମୟଟକ ବାଦ ଦେଇ ପୁଣି ପ୍ରାୟ ସାଢ଼େ ପାଞ୍ଚଟା ପର୍ଯ୍ୟନ୍ତ । ଘଣ୍ଟାଏ ଦେଢ଼ ଘଣ୍ଟା ସାଂଧ୍ୟ ଭ୍ରମଣ ପରେ ପୁଣି ଲେଖି ବସୁଥିଲେ ଯେ ଉଠୁଥିଲେ ରାତି ନଅଟା ବେଳକୁ । ଆଶ୍ରମ ଚୌକିର ଦୁଇ ହାତଉପରେ ଖଣ୍ଡିଏ ଚକ୍କଣ ପଟା ପଡୁଥିଲା । ସେଇଠି ଲେଖା, ସେଇଠି ପଢ଼ା । ବେଳେବେଳେ ସକାଳଓଳି ସୂତାକଟା ମଧ୍ୟ ହେଉଥିଲା ।

ସକାଳ ବେଳା ପ୍ରାୟ ଏଗାରଟା ବେଳେ ମଧ୍ୟାହ୍ନ ଭୋଜନ କରୁଥିଲେ । ରାତିରେ ସାଢ଼େ ନଅଟା ବେଳେ । ଖାଦ୍ୟ ଭିତରେ ଉଷୁନା ଚାଉଳର ଭାତ, ଟିକିଏ ଘିଅ, ଡ଼ାଲିରେ ଆଳୁ, କଦଳୀ ପଡ଼ ଡାଲମା, ଶାଗ ଭଜା । ଏଇଥିଲା ତାଙ୍କର ପ୍ରିୟ ଖାଦ୍ୟ । ବେଳେବେଳେ ରାତିରେ ରୁଟି ମଧ୍ୟ ଖାଉଥିଲେ । ଯେଉଁ ଦିନ ମାଛ ଖାଉଥିଲେ ଖାଇ ସାରିବା ପରେ ପରେ ସାଦା ପାନ ଦୁଇଖଣ୍ଡ ଚୋବାଉଥିଲେ । ବର୍ଷରେ ଥରେ ମାଂସ ଖାଉଥିଲେ ଆଶ୍ୱିନ ମାସର ଅଷ୍ଟମୀ ଦେବୀ ପୂଜାଦିନ । କାର୍ତ୍ତିକ ମାସରେ ଦିନେ ମଧ୍ୟ ହବିଷ୍ୟାନ୍ନ ହେଉଥିଲା । ପରିବା ଭିତରେ ତାଙ୍କର ପ୍ରିୟଥିଲା ବିଭିନ୍ନ ପ୍ରକାରର ଶାଗ, ଅମୃତଭଣ୍ଡା, ବାଇଗଣ, କଦଳୀ, ଓଲୁଅ, ଜହ୍ନି ଓ ଭେଣ୍ଡି । ଅର୍ଶରୋଗରେ ପୀଡିତ ଥିବାହେତୁ ସେ ଆଦୌ ଲଙ୍କା ଖାଉ ନଥିଲେ । ତେଲ ଓ ମସଲାର ପରିମାଣ ମଧ୍ୟ ଅତି କମ୍ ଥିଲା ।

ଗୋପବନ୍ଧୁଙ୍କ ଲାଗି ଯୋଗେଇ କରି ଦେଉଥିଲେ ଶ୍ରୀ ରାମ ବାରିକ ତାଙ୍କର ଏକମାତ୍ର ଅନୁଚର । ସନ୍ଧ୍ୟାବେଳେ ପ୍ରାୟ ଘଣ୍ଟାଏ ଦେଢ଼ ଘଣ୍ଟା ପାଇଁ ସେ ବୁଲି ଯାଉଥିଲେ । ରାସ୍ତାରେ କାହା ସଙ୍ଗେ ସେ ବିଶେଷ କଥାବାର୍ତ୍ତା ହେଉ ନଥିଲେ । ମୁହଁରେ ଚିନ୍ତାର ସ୍ପଷ୍ଟ ରୂପ । ଭବିଷ୍ୟତ କର୍ମପନ୍ଥାର ପରିକଳ୍ପନା ଓ ବିଗତ ଘଟଣାବଳୀର ପ୍ରତିଚାରଣା । ତାହାହିଁ ତାଙ୍କ ଚିନ୍ତାର ପ୍ରଧାନ କାରଣ । ସକାଳଓଳି ଭଳି ଉପରଓଳି

ମଧ୍ୟ ପୂଜା ପାଠ କରୁଥିଲେ ଘରକୁ ଫେରିବା ପରେ ପରେ । ତା’ ପରେ ପୁଣି କାଗଜ କଲମ ।

ରାତିରେ ବହୁ ବେଳ ପର୍ଯ୍ୟନ୍ତ ଅନିଦ୍ରା ରହୁ ନଥିଲେ ଗୋପବନ୍ଧୁ । ଶୋଉଥିଲେ ପ୍ରାୟ ଦଶଟା ବେଳେ । କବାଟ ଦୁଇପଟ ବନ୍ଦଥିବା ରୁଦ୍ଧ କୋଠରୀ ଭିତରେ ସେ ଶୋଇପାରୁ ନଥିଲେ । ସେ ଦୃଷ୍ଟିରୁ ସେ ଥିଲେ ଏକ ବ୍ୟତିକ୍ରମ । ଶୋଇଲାବେଳେ ଝରକା କବାଟ ସବୁ ଖୋଲା ପଡ଼ିଥାଏ । ବର୍ଷାଦିନ ନହେଲେ ବାହାରେ ଶୋଇବା ଲାଗି ସେ ଭଲ ପାଉଥିଲେ । ନିଦ ଖୁବ୍ ପତଳା । ସାମାନ୍ୟ ଟିକିଏ ଶବ୍ଦରେ ସେ ଉଠି ପଡୁଥିଲେ । ଅଧିକାଂଶ ଦିନ ରାତି ସାଢ଼େ ତିନି, ଚାରିଟା ବେଳୁ ଉଠିପଡ଼ି ଲେଖି ବସୁଥିଲେ । ତାଙ୍କ ଅନୁଚର ରାମ ବାରିକଙ୍କ କଥାନୁସାରେ “କେବେ କେବେ ତା ଆଗରୁ ବି ଉଠିପଡ଼ି ଲେଖି ବସନ୍ତି । ଲେଖାହିଁ ତାଙ୍କର ପ୍ରଧାନ ଝୁଙ୍କ । ତୁଣ୍ଡରେ ଖାଲି ମୋ ଦେଶ, ମୋ ଦେଶ ଭାଇ, ମୋ ମାତୃଭାଷା । ସବୁବେଳେ କହନ୍ତି ତାଙ୍କ ମାତୃଭାଷାକୁ ବଡ଼ ବୋଲି ଭାବ ମୁଣ୍ଡରେ ମୁଣ୍ଡାଇଥାନ୍ତି ସେ କଥା ସେ ମୋ ଆଗରେ କେତେଥର କହିଛନ୍ତି । ଲେଖୁ ଲେଖୁ ଭାତ ଶୁଖେ । ଟେବଲରେ ପିବାର ଥିଲେ ତେଲ ହୋଇଯାଏ ଅଥଚ ଆଗରେ ଘଣ୍ଟା ଥୁଆ ହୋଇଥାଏ । ଗାଡ଼ି ଯିବାକୁ ଦଶ ମିନିଟ ଥିବ ଲେଖା ବନ୍ଦ କରିବେ । ତରତର ହୋଇ ବାହାରିବେ ।” (୩)

ପ୍ରତି ମୁହୂର୍ତ୍ତରେ ଦେଶ ଓ ଦଶର ଚିନ୍ତା । ବେଳେ ବେଳେ ରାତି ଅଧରେ ନିଦ ବାଉଳାରେ ଉଠି ପିଲାଙ୍କ ଭଳି ହେ ହେ ହୋଇ କାନ୍ଦୁଥିବେ ଉତ୍କଳର ମଣି ଗୋପବନ୍ଧୁ । ଚିନ୍ତା ଦେଶବାସୀଙ୍କ ପାଇଁ । ରାମ ବାରିକଙ୍କ କଥାନୁଯାୟୀ “ରାତି ଅଧ । ବରଷା ହେଉଥିବ । ସତ୍ୟବାଦୀ ଗୁରୁବାସର ସମସ୍ତଙ୍କୁ ବଡ଼କରି କରି ଶୁଭିବ କାହାର ବିକଳ କାନ୍ଦଣା, କିଏ କାନ୍ଦୁଛି ! ଧାଆଁ, ଦେଖ ।”

ବାଉଳା ହେଲା ପରେ ନିଦରୁ ଉଠିପଡି କାନ୍ଦୁଛନ୍ତି ପଣ୍ଡିତ ଗୋପବନ୍ଧୁ । କାହାକୁ କେଉଁ ଗଣ୍ଡ ମଫସଲରେ ଦେଖି ଆସିଥିଲେ । ଆଜି,

(୩) ଉତ୍କଳମଣି—ଶ୍ରୀ ଗୋପୀନାଥ ମହାନ୍ତି ପୃ ୪୦

କନକା, ଗୁଆଣିର, ଡ଼ଭର କ ସମଗ୍ର ପାଠ ଭିତରେ ସେ କେଉଁ ଗରବଟିମାନ, ତାଙ୍କ କୁଡ଼ଆ ଛୁଆଣି ହୋଇ ପାରି ନଥିଲା । ମେଘ ଗଳିଲା, ଘର ତ ଛୁଆଁଣି ହୋଇନଥିବ । ତା ଛୁଆ ପିଲା କେଉଁଠି ମୁଣ୍ଡ ଗୁଞ୍ଜିଥିବେ ଏଇଆ ଭାବ ଗୋଟି ଗୋଟି କରି ନାଁ ଧରି ବାହୁନୁଥିବେ ହାଯ ଆପଣେ ।" (୪)

ବ୍ୟବହାର କରିବାରେ ଗୋଟାଏ ସଉକ ଥିଲା ପାରିଲା ଶାସମ୍ଭୀ ଗାମୁଛା । ତନ୍ତୀ ବୁଣା ଖଦି ପିନ୍ଧିବାର ଅଭ୍ୟାସ ଥିଲା ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପୂର୍ବରୁ । ତା ପରେ ପରେ ପରିଧେୟ ଥିଲା ଖଦଡ଼ । ପାଦରେ ଶସ୍ତା ଧରଣର ଚପଲ । କିନ୍ତୁ ବିହାର-ଓଡ଼ିଶା କାଉନ୍‌ସିଲ ସଭାର ସଭ୍ୟ ଭାବରେ ଯୋଗ ଦେବାକୁ ଗଲାବେଳେ ଭଲ ପୋଷାକ ଓ ଦାମୀ ଯୋତା ପିନ୍ଧୁଥିଲେ । ଅସହଯୋଗ ଆନ୍ଦୋଳନରେ ସାମିଲ୍ ହେବା ପରେ ପରେ ଚପଲ ପିନ୍ଧିବା ଛାଡ଼ି ଦେଇଥିଲେ ।

ଗାଈ ଗୋରୁଙ୍କ ସେବା କରିବା ଥିଲା ତାଙ୍କ ଜୀବନର ଆଉ ଏକ ଉଲ୍ଲେଖନୀୟ କାର୍ଯ୍ୟ । ଗୋ-ମାତାର ସେବା କରିବାକୁ ଏତେ ଭଲ ପାଉଥିଲେ ଯେ ସତ୍ୟବାଦୀରେ ବୋଧେ ସେଇଥିପାଇଁ ଅନେକଗୁଡ଼ିଏ ଗୋରୁଗାଈ ପାଳିତ ହେଉଥିଲେ । "ଗୋ ମହାତ୍ମ୍ୟ" ଲେଖିବାର ହୁଏତ ତାହା ଅନ୍ୟ ଏକ କାରଣ ।

ସତ୍ୟବାଦୀରେ ଥିବାବେଳେ ଅନେକ ସମୟରେ ତାଙ୍କ କୋଠରି କର୍ମମୁଖର ହୋଇ ଉଠିଥିଲା । ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ନେତୃବୃନ୍ଦଙ୍କ ସମାଗମ ହେଉଥିଲା ସେଠାରେ । ବିଷୟ ଆଲୋଚନା ଓଡ଼ିଶାର ବିଭିନ୍ନ ସମସ୍ୟା ଓ ତାର ନିରାକରଣ । ତା ସହିତ ଓଡ଼ିଶା ଓ ଓଡ଼ିଆ ଲୋକଙ୍କର ସର୍ବତୋମୁଖୀ ବିକାଶ ।

ସେଠାରେ ରହିବା ଭିତରେ ଗୋପବନ୍ଧୁ ବିଦ୍ୟାଳୟର ଛାତ୍ରମାନଙ୍କ ସହିତ ମିଶୁଥିଲେ । ଆଳାପ ଆଲୋଚନା କରୁଥିଲେ, ଉପଦେଶ

(୪) ତତ୍ରୈବ—ପୃ ୨୫

ଦେଉଥିଲେ, କାହାଣୀ ଛଳରେ ନୈତିକତା ତଥା ଚରିତ୍ରର ନିଦର୍ଶନ ଉପସ୍ଥାପିତ କରୁଥିଲେ । ସପ୍ତାହାନ୍ତ ସଭାମାନଙ୍କରେ ଭାଷଣ ଦେଉଥିଲେ, ଶ୍ଳୋକାନ୍ତ ପ୍ରତିଯୋଗିତାରୁ ଆନନ୍ଦ ଆହରଣ କରୁଥିଲେ, ଫୁଟବଲ୍ କମ୍ବା କବାଡି ଖେଳବେଳେ ପିଲାଙ୍କୁ ବାହାନା କରୁଥିଲେ ଜଣେ ଖେଳୁଆଡ଼ର ନିଘା ନେଇ ।

ବେଳେବେଳେ ଅଚାନକ ଭାବରେ ଶ୍ରେଣୀଗୃହ ଭିତରକୁ ମଧ୍ୟ ପଶି ଯାଉଥିଲେ ଶିକ୍ଷାଦାନ ପାଇଁ । ସେ କେଉଁ ଶ୍ରେଣୀକୁ ଯାଉଥିଲେ ଓ କେଉଁ ବିଷୟ ପଢ଼ାଇବାକୁ ଯାଉଥିଲେ ସେଥିରେ କିଛି ସ୍ଥିରତା ନଥିଲା । ତେବେ ତାଙ୍କ ଶିକ୍ଷାଦାନ ପ୍ରଣାଳୀରେ ଯଥେଷ୍ଟ ମୌଳିକତା ମଧ୍ୟ ରହିଥିଲା; ଥିଲା ସରସତା ମଧ୍ୟ । ତାଙ୍କ ଦେଶହିତୈଷୀ ଚିନ୍ତାଧାରା, ନରଙ୍କୁ ଶ୍ରୀ ନାରାୟଣ ମନେ କରିବା ଭାବ ଅତି ସହଜ ଭାବରେ ଛାତ୍ରଗଣଙ୍କ ମନରେ ଅଲକ୍ଷ୍ୟ ସଙ୍କେତ ରଖି ଦେଉଥିଲା । ସତ୍ୟବାଦୀର ଜଣେ ପୁରାତନ ଛାତ୍ରଙ୍କ ମତରେ, "ସେ (ଗୋପବନ୍ଧୁ) ବିଦ୍ୟାଳୟକୁ ଆସିଗଲା ମାତ୍ରକେ ଗୃହରେ ଗୋଟାଏ ସରସତାର ଢେଉ ଖେଳିଯାଉଥିଲା । କେଉଁ ପିଲା କିପରି ଅଧ୍ୟୟନରେ ଲିପ୍ତ, କାହାର ଆଚରଣ କିପରି, କେଉଁ ପିଲାର ଭାବଭଙ୍ଗୀ କିପରି ଗତିରେ ପ୍ରବାହିତ ହେଉଛି ସେ ସବୁ ଚିହ୍ନି ଚିହ୍ନି କରି ବୁଝୁଥିଲେ । ପିଲାମାନଙ୍କ ସହିତ ଏକତ୍ର ଭୋଜନ କରି ହାସ୍ୟରସର ତରଙ୍ଗ ଛୁଟାଇ କଥା ପ୍ରସଙ୍ଗରେ ସେମାନଙ୍କ ଆଦର୍ଶଭାଜନ ହୋଇ ପାରିଲେ ।" (୫)

ବିଦ୍ୟାଳୟ ଗଠନ କରିବା ମୂଳରେ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟ ଥିଲା ଉତ୍ତମ ମନୁଷ୍ୟ ଗଠନ କରିବା ।

ସେତେବେଳ ପର୍ଯ୍ୟନ୍ତ ଓଡ଼ିଶା ଶିକ୍ଷାକ୍ଷେତ୍ରରେ ଅତ୍ୟନ୍ତ ଅନଗ୍ରସର ଥିଲା । ୧୯୧୧ ଡିସେମ୍ବର ମାସରେ, '୧୯୫୦ ମସିହାର ବଙ୍ଗ ବିଭାଜନ ଆଦେଶକୁ ରଦ୍ଦ କରି ଭାରତ ସରକାର ପୁନଶ୍ଚ ବିଭକ୍ତ ବଙ୍ଗକୁ ଏକାଙ୍ଗ

(୫) ଯୁଗପୁରୁଷ ଗୋପବନ୍ଧୁ ଦାସ —ପୃ ୭୬

କରିବା ସଙ୍ଗେ ସଙ୍ଗେ ସ୍ୱତନ୍ତ୍ର ବିହାର-ଓଡ଼ିଶା ପ୍ରଦେଶ ଗଠନ କରିଥିଲେ । ବିହାର-ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହୋଇଥିଲେ ମଧ୍ୟ ବିହାରର ରାଜଧାନୀ ପାଟଣାଠାରେ କୌଣସି ବିଶ୍ୱବିଦ୍ୟାଳୟ ନଥିଲା । ତେଣୁ ବିହାର କିମ୍ବା ଓଡ଼ିଶା ଯେ କୌଣସି ପ୍ରଦେଶର ଯେ କୌଣସି ସ୍ଥାନରେ ବିଦ୍ୟାଳୟ ପ୍ରତିଷ୍ଠିତ ହେବାକୁ ହେଲେ ତାହାର ମଞ୍ଜୁରୀ ଆଦେଶ କଲିକତା ବିଶ୍ୱବିଦ୍ୟାଳୟ ହିଁ ପ୍ରଦାନ କରୁଥିଲା । ସେଥିପାଇଁ ଆବଶ୍ୟକ ହେଉଥିଲା ବିହାର-ଓଡ଼ିଶା ସରକାରଙ୍କ ସୁପାରିଶ ପତ୍ର ।

ତେବେ ଗୋପବନ୍ଧୁଙ୍କ ମଣିଷଗଢ଼ା କାରଖାନାକୁ ଇଂରେଜ ସରକାର ବୋମା ତିଆରି ହେଉଥିବା ଏକ କାରଖାନା ମନେ କରୁଥିବା ଦୃଷ୍ଟିରୁ ବିହାର-ଓଡ଼ିଶା ସରକାର କଲିକତା ବିଶ୍ୱବିଦ୍ୟାଳୟକୁ ସତ୍ୟବାଦୀ ସ୍କୁଲର ମଞ୍ଜୁରୀ ପାଇଁ ସୁପାରିଶ କରୁ ନଥିଲେ । ଫଳତଃ ହାଇସ୍କୁଲ ବିଶ୍ୱବିଦ୍ୟାଳୟର ମଞ୍ଜୁରୀ ପାଇପାରୁ ନଥିଲା । ତେବେ ସନ୍ଦେହୀ ସରକାରଙ୍କ ଶିକ୍ଷା ବିଭାଗ ଗୃହୀ ଥିଲେ ସତ୍ୟବାଦୀ ବିଦ୍ୟାଳୟକୁ ମଞ୍ଜୁରୀ ଆଦେଶ ମିଳିବାରେ ପ୍ରତିବନ୍ଧକ ଯେ କୌଣସିମତେ ସୃଷ୍ଟି କରିବା । ତେଣୁ ସେମାନେ ଗୃହୀ ଥିଲେ ସ୍କୁଲ ପାଇଁ କୋଠାଘର ନହେଲେ ସ୍କୁଲ ମଞ୍ଜୁରୀ ମିଳିବା ସମ୍ଭବ ନୁହେଁ । ପୁନଶ୍ଚ ବିଶ୍ୱବିଦ୍ୟାଳୟର ଅନ୍ୟ ଏକ ସର୍ତ୍ତ ଥିଲା ପ୍ରଥମେ ବନ ବିଦ୍ୟାଳୟ ସରକାରୀ ଅର୍ଥ ସାହାଯ୍ୟ ଗ୍ରହଣ କରିବାକୁ ହେବ ।

କିନ୍ତୁ ସତ୍ୟବାଦୀ ଗୋଷ୍ଠୀର ଉଦ୍ଦେଶ୍ୟ ଥିଲା ଅନ୍ୟ । ଥରେ ସରକାରୀ ଅର୍ଥ ସାହାଯ୍ୟ ସ୍ୱରୂପ ଗ୍ରହଣ କଲେ ଅନେକ ଗୁଡ଼ାଏ ସରକାରୀ ସର୍ତ୍ତ ତଥା ନିୟମ ପାଳନ କରିବାକୁ ପଡ଼ିବ । ଫଳତଃ ବିଶ୍ୱବିଦ୍ୟାଳୟ ତାର ସ୍ୱାତନ୍ତ୍ର୍ୟ ବଜାୟ ରଖିବା ସମ୍ଭବ ହେବ ନାହିଁ । ଶହ ଶହ ଗରିବ ଅଥଚ ମେଧାବୀ ଛାତ୍ର ମାଗଣାରେ ଶିକ୍ଷା ପାଇ ପାରିବା ଆଇନ ଅନୁସାରେ ହୁଏତ ଅସମ୍ଭବ ହୋଇପଡ଼ିବ । କାରଣ ସରକାରଙ୍କ ନିୟମ ଅନୁଯାୟୀ ଯେତେ ଯେତେ ମେଧାବୀ ଗରିବ ଛାତ୍ର ହୁଅନ୍ତୁ ନା କାହିଁକି ଆଇନର ସୀମା ଅତିକ୍ରମ କରିହେବ ନାହିଁ ।

ପୁନଶ୍ଚ ଶିକ୍ଷକମାନଙ୍କ ଦରମା । ବନ ବିଦ୍ୟାଳୟର ଶିକ୍ଷକମାନେ ସେମାନଙ୍କ ଭରଣ ପୋଷଣ ଲାଗି ଯେତିକି ଅର୍ଥ ଦରକାର କେବଳ ସେତିକି ଟଙ୍କା ହିଁ ଦରମା ବାବଦରେ ଗ୍ରହଣ କରୁଥିଲେ । ପ୍ରାୟ ପ୍ରତ୍ୟେକ ଶିକ୍ଷକ କୋଡ଼ିଏ ତିରିଶ ଟଙ୍କା ନେଇ ମଧ୍ୟ ସେମାନଙ୍କ ଅନ୍ତର ଢାଳି ଦେଉଥିଲେ ବିଦ୍ୟାଳୟ ପାଇଁ । ସରକାରୀ ସାହାଯ୍ୟ ନେବା ମାତ୍ରେ ସରକାରଙ୍କ ନିୟମାନୁସାରେ ଶିକ୍ଷକମାନେ ଅଧିକ ଦରମା ନେବାକୁ ବାଧ୍ୟ ହେବେ । ତେଣୁ ସରକାରୀ ସାହାଯ୍ୟ ଗ୍ରହଣ ନ କରିବା ଲାଗି ଅନ୍ୟାନ୍ୟ କାରଣ ମଧ୍ୟରୁ ଏହା ମଧ୍ୟ ଥିଲା ଅନ୍ୟତମ । ସରକାର ସ୍କୁଲକୁ ମଞ୍ଜୁରୀ ନ ଦେବା ଲାଗି ସତ୍ୟବାଦୀ ସ୍କୁଲର କୋଠାଘର ନଥିବା, ସରକାରୀ ଅର୍ଥ ସାହାଯ୍ୟ ଗ୍ରହଣ କରୁନଥିବା ଇତ୍ୟାଦି ଆଳ ଦେଖାଇବା ସୁବିଧାଜନକ ହୋଇଯାଇଥିଲା । କିନ୍ତୁ ସେମାନଙ୍କ ପ୍ରକୃତ ଉଦ୍ଦେଶ୍ୟ ଥିଲା ଅଲଗା ।

ଭାଗ୍ୟର ବିଡ଼ମ୍ବନା ସେତେବେଳକୁ ପୁରୀର କଲେକ୍ଟର ହୋଇ ଆସିଥିଲେ ଜଣେ ଓଡ଼ିଆ ଶ୍ରୀ ରମାବଲ୍ଲଭ ମିଶ୍ର । ସେ ପ୍ରକୃତରେ ଇଂରେଜ ସରକାରଙ୍କ ଅଧୀନରେ ଚାକିରି କରୁଥିଲେ ମଧ୍ୟ ଥିଲେ ଜଣେ ସ୍ୱାଧୀନ ଓ ନିର୍ଭୀକଚେତା । ଜିଲ୍ଲାରେ ସରକାରଙ୍କ ଉଚ୍ଚତମ ପ୍ରତିନିଧି ଥିବା ଯୋଗୁଁ ସତ୍ୟବାଦୀ ବିଦ୍ୟାଳୟର ସନ୍ଦେହାତ୍ମକ କାର୍ଯ୍ୟକଳାପର ତଦାରଖ କରିବା ଭାର ତାଙ୍କ ଉପରେ ପଡ଼ିଥିଲା । ସେ ପ୍ରକାଶ୍ୟଭାବରେ ତଥା ଗୋପନୀୟ ତଦନ୍ତ କରି ସରକାରଙ୍କ ସନ୍ଦେହ ଦୂର କରିଥିଲେ ।

୧୯୧୪ ମସିହାରେ ସ୍କୁଲକୁ ମଞ୍ଜୁରୀ ମିଳିବା ଚିଠି ଆସିଥିଲା । କିନ୍ତୁ ସେ ମଞ୍ଜୁରୀ ପତ୍ର ଥିଲା ମାତ୍ର ଗୋଟିଏ ବର୍ଷ ପାଇଁ । ସେଥିରେ ସରକାରଙ୍କ ତରଫରୁ ଆଉ ଗୋଟିଏ ଚୁକ୍ତି ଥିଲା ବିଦ୍ୟାଳୟ ସରକାରଙ୍କ-ଠାରୁ ମାସିକ ୭୫ ଟଙ୍କା ସାହାଯ୍ୟ ଗ୍ରହଣ କରିବ । କିନ୍ତୁ ଗୋପବନ୍ଧୁ ଓ ତାଙ୍କ ଗୋଷ୍ଠୀ ସେ ଚୁକ୍ତିରେ ସମ୍ମତ ହୋଇ ନଥିଲେ ସୁଦ୍ଧା ପ୍ରତିବର୍ଷ ଠିକ୍ ସମୟରେ ମଞ୍ଜୁରୀ ପତ୍ର ପାଉଥିଲେ ବର୍ଷକ ପାଇଁ—୧୯୧୭ ମସିହା ପର୍ଯ୍ୟନ୍ତ । ସେହିବର୍ଷ ସ୍ଥାୟୀଭାବେ ସ୍କୁଲକୁ ମଞ୍ଜୁରୀ ଦିଆଯାଇଥିଲା ।

ସରକାରଙ୍କ ସର୍ତ୍ତ ଅନୁସାରେ ସତ୍ୟବାଦୀରେ ପକ୍କା ଘର ତିଆର ହୋଇଥିଲେ ମଧ୍ୟ ଛାତ୍ରଗଣ ସେଇ ବକୁଳ କୁଞ୍ଜ ଭିତରେ ମୁକ୍ତ ଆକାଶ ତଳେ ଓ ଖୋଲା ଆଲୁଅରେ ଅଧ୍ୟୟନ କରୁଥିଲେ । ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କେବଳ ସୁନାମ ଅର୍ଜନ କରି ଭଲ ଫଳ ଦେଖାଇ ପାରୁଥିଲେ ତା ନୁହେଁ, ବରଂ ଓଡ଼ିଶାର ତତ୍କାଳୀନ ନେତୃବୃନ୍ଦଙ୍କ ଆସ୍ଥାବାନ୍ ହୋଇ ଉଠିଥିଲେ । ୧୯୧୮ ମସିହାର ଉତ୍କଳ ସମ୍ମିଳନୀବେଳେ ଅନୁଷ୍ଠାନର ଜଣେ ପ୍ରଧାନ କର୍ତ୍ତା ମଧୁବାବୁଙ୍କ ସହ ପୂର୍ବ ନିର୍ଦ୍ଧାରିତ ସ୍ୱେଚ୍ଛାସେବକମାନଙ୍କ କୌଣସି କାରଣରୁ ମତ ପାର୍ଥକ୍ୟ ହୋଇଥିବା ଯୋଗୁଁ ସେମାନେ ସେମାନଙ୍କ ସହଯୋଗ ପାଇଁ ଅନିଚ୍ଛା ପ୍ରକାଶ କରିଥିଲେ । ସେ ଦାୟିତ୍ୱ ସତ୍ୟବାଦୀର ଛାତ୍ରଗଣ ଅତି ସୁରୁଖୁରୁ ରୂପେ ସମ୍ପାଦନ କରିଥିଲେ ଗୋପବନ୍ଧୁଙ୍କ ନେତୃତ୍ୱରେ ।

ସେ ବର୍ଷର ଦୋଳଛୁଟି ପୂର୍ବରୁ ସତ୍ୟବାଦୀର ସମସ୍ତ ଶିକ୍ଷକ ଓ ଛାତ୍ର ପଦବ୍ରଜରେ ନୀଳମାଧବ ଦର୍ଶନ ଉଦ୍ଦେଶ୍ୟରେ ଯାଇଥିଲେ । ଭ୍ରମଣ ମଧ୍ୟ ଶିକ୍ଷାର ଏକ ଅଂଶ ରୂପେ ଗୃହୀତ ହୋଇଥିଲା । ଖଣ୍ଡପଡ଼ା ଓ ନୀଳମାଧବ ଦର୍ଶନ କରି ଫେରିବା ରାସ୍ତାରେ ଜଟଣୀ ଷ୍ଟେସନ୍ ନିକଟ ସାକ୍ଷୀଗୋପାଳଙ୍କ ଙ୍କମାର କଟେଗଡ଼ରେ ଖିଆପିଆ ସାରି ରାତି ଘୁରିଟାବେଳେ ସତ୍ୟବାଦୀ ଫେରିଯିବାର ଯୋଜନା ଥିଲା । ହଠାତ୍ ପ୍ରାୟ ବାରଟାବେଳେ ପଣ୍ଡିତ ଗୋପବନ୍ଧୁ ଓ ବ୍ରଜସୁନ୍ଦର ଦାସ ସେଠି ପହଞ୍ଚି ଯାଇଥିଲେ । ଗୋପବନ୍ଧୁଙ୍କ କହିବା କଥା ଥିଲା, "କଟକରେ ଯେଉଁ ଛାତ୍ରମାନେ ଉତ୍କଳ ସମ୍ମିଳନୀରେ ସ୍ୱେଚ୍ଛାସେବକ ହେବାର ଥିଲା, ମିଷ୍ଟର ଦାସଙ୍କ ସଙ୍ଗେ ଅପଡ଼ ହୋଇ ସେମାନେ ସ୍ୱେଚ୍ଛାସେବକ ହେବେ ନାହିଁ ବୋଲି ଜଣାଇ ଦେଲେ । ମୋ ପାଖକୁ ବ୍ରଜସୁନ୍ଦର ଏ ଖବର ନେଇ ଆସିଛନ୍ତି । ଆମ ସ୍କୁଲରୁ ସ୍ୱେଚ୍ଛାସେବକ ଯାଇପାରିଲେ କାମ ଚଳିଯିବ ବୋଲି ମିଷ୍ଟର ଦାସ ଚିଠି ଲେଖିଛନ୍ତି । ମୁଁ ଷାଠିଏ ଜଣ ସ୍ୱେଚ୍ଛାସେବକ ନେଇଯିବି ବୋଲି ଆଜି ଟେଲିଗ୍ରାମ କରିଛି ।" (୬)

(୬) ଆତ୍ମଜୀବନୀ—ପଣ୍ଡିତ ନୀଳକଣ୍ଠ, ପୃ ୧୩୬

ସେଇୟା ହେଲା । ସେଠୁ ଗୋଦାବରୀଶ, ନୀଳକଣ୍ଠ ଓ ଅନ୍ୟାନ୍ୟ କେତେଜଣ ଶିକ୍ଷକଙ୍କ ସମେତ ପ୍ରାୟ ୫୦ଏ ଜଣ ଛାତ୍ରଙ୍କୁ ଗୋପବନ୍ଧୁ କଟକ ଅଭିମୁଖେ ଯାତ୍ରା କରିଥିଲେ । କଟକ ରେଳଷ୍ଟେସନ୍‌ରେ ମଧୁବାବୁ ନିଜେ ଏମାନଙ୍କୁ ଅପେକ୍ଷା କରିଥିଲେ ଓ ସମସ୍ତେ ଓହ୍ଲାଇବା ମାତ୍ରେ ମଧୁବାବୁ ଗୋପବନ୍ଧୁଙ୍କୁ ନିବିଡ଼ ଆଲିଙ୍ଗନ କରି, ଗୋଦାବରୀଶ ଓ ନୀଳକଣ୍ଠଙ୍କୁ କୁଣ୍ଢାଇ ପକାଇଥିଲେ । ତାଙ୍କ ହୃଦୟ ପୁଲକରେ ପୂରି ଉଠିଥିଲା । ମୁଖର ଭାଷା ଥିଲା "ଆସ, ନାଳନ୍ଦା ଗୁରୁ ଆଉ କର୍ମୀ ଅଭାବ ହେବେ ନାହିଁ । ମଙ୍ଗରାଜ ମଙ୍ଗ ମୋଡ଼ି ପାରିବ ନାହିଁ ।"

ତା ପରଦିନ ଯଥାରୀତି ଇଦଗା ପଡ଼ିଆରେ ଉତ୍କଳ ସମ୍ମିଳନୀର ଅଧିବେଶନ ବସିଥିଲା । ଯେଉଁମାନେ ପୂର୍ବରୁ ସ୍ୱେଚ୍ଛାସେବକ ରୂପେ କାର୍ଯ୍ୟ କରିବା ସ୍ଥିର ହୋଇଥିଲା ସେମାନେ ଦର୍ଶକ ଟିକେଟ ନେଇ ଦର୍ଶକ ଗ୍ୟାଲେରୀରେ ବସିଥିଲେ । ମଧୁବାବୁଙ୍କ ପରାମର୍ଶ ଅନୁଯାୟୀ ଟିକେଟ ନ ଦେଖାଇ କୌଣସି ବ୍ୟକ୍ତି ଭିତରକୁ ଯାଇ ନପାରିବା କାରଣରୁ ସେଦିନ ଅଧିବେଶନର ଜଣେ ବିଶିଷ୍ଟ ଅତିଥି କବି ଗଙ୍ଗାଧର ମେହେର ମଧ୍ୟ ପ୍ରବେଶ ଦ୍ୱାର ନିକଟରେ ଅଟକି ରହିଥିଲେ । ପରେ ଗୋପବନ୍ଧୁ, ମଧୁବାବୁ ପ୍ରମୁଖମାନେ ପରିଚୟ କରାଇ ନେବାପରେ ଶୃଙ୍ଖଳିତ ସତ୍ୟବାଦୀର ଛାତ୍ରମାନେ ତାହାଙ୍କୁ ପାଇ ବିଶିଷ୍ଟ ଅତିଥି ଟିକେଟ ଆଣି ଲଗାଇ ଭିତରକୁ ପାଛୋଟି ନେଇଥିଲେ ।

ସେଦିନ ସଭାର କାର୍ଯ୍ୟକ୍ରମରେ ଯଦିଓ ଗୋପବନ୍ଧୁଙ୍କର କିଛି କହିବାର ନଥିଲା ତଥାପି ଦେଶ ମିଶ୍ରଣ ସମ୍ପର୍କରେ ବକ୍ତୃତା ଦେବାକୁ ଉପସ୍ଥିତ ଜନତାଙ୍କ ଅନୁରୋଧକୁ ଉପେକ୍ଷା କରାଯାଇ ନଥିଲା । ମଧୁବାବୁ ସଭା ମଞ୍ଚ ଉପରେ ଗୋପବନ୍ଧୁଙ୍କ କାନ୍ଧରେ ହାତ ପକାଇ ଘୋଷଣା କରିଥିଲେ, "ଗୋପବନ୍ଧୁ ଆଉ ଗୋପ୍ୟ ହୋଇ ରହି ନପାରେ । ଏ ସମ୍ପର୍କରେ ତାର କହିବାର ନଥିଲା । ମାତ୍ର ଲୋକ ପ୍ରାଣରେ ମୋ ଗୋପବନ୍ଧୁ ସ୍ଥାନ ପାଇଛି । ସଭାପତିଙ୍କ ଅନୁମତି ହେଉ ।" ସଭାପତିଙ୍କ

ଅନୁମନ୍ତ ପରେ ଗୋପବନ୍ଧୁ ସିଂହଭୂମି, ମେଦନୀପୁର ପ୍ରଭୃତି ଉତ୍କଳର ବିଚ୍ଛିନ୍ନ ଅଞ୍ଚଳର ଅବସ୍ଥା ଯେପରି ଭାବରେ ବର୍ଣ୍ଣନା କରିଥିଲେ, ସମବେତ ଜନ ସମାଜଙ୍କ ହୃଦୟରେ ଉଦ୍‌ବେଳନ ସୃଷ୍ଟି ହୋଇଥିଲା ।

ସତ୍ୟବାଦୀର ଏ ପ୍ରକାର କାର୍ଯ୍ୟକଳାପ ତାର ପ୍ରତିଷ୍ଠାତା ଗୋପବନ୍ଧୁ, ଶିକ୍ଷକବୃନ୍ଦ ତଥା ଅନୁଷ୍ଠାନର ଖ୍ୟାତି ଆହୁରି ବଢ଼ାଇ ଦେଇଥିଲା । କମିଶନର ସାର୍ କେ. ଜି. ଗୁପ୍ତ ସେ ଅନୁଷ୍ଠାନ ସମ୍ପର୍କରେ ତାଙ୍କର ମତ ବ୍ୟକ୍ତ କରିଥିଲେ । "Thh school is a happy combination of old and new methods but its success is mainly due to the spirit of self sacrifice which actuates those who compose its staff." (୭)

କିନ୍ତୁ ଗୋପବନ୍ଧୁ ଯେତେବେଳେ ନିଜେ ଭାରତୀୟ ଜାତୀୟ କଂଗ୍ରେସ ସହିତ ଏକାତ୍ମ ହୋଇ ଉଠିଥିଲେ ଉତ୍କଳ ସମ୍ମିଳନୀକୁ ଜାତୀୟ କଂଗ୍ରେସର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପ୍ରାୟ ଏକ ଥିବା ଦୃଷ୍ଟିରୁ ତାର ସହଯୋଗୀ ଅନୁଷ୍ଠାନ ରୂପେ ସ୍ୱୀକୃତ କରାଇବାରେ ସଫଳକାମ ହୋଇ ପାରିଥିଲେ ଚକ୍ରଧରପୁର ଉତ୍କଳ ସମ୍ମେଳନର ଅଧିବେଶନ ପରେ ପରେ, ସେ ଭାବିଥିଲେ ନିଜକୁ ବିଭିନ୍ନ ଅନୁଷ୍ଠାନଠାରୁ ଦୂରେଇ ନେବେ । ଏବଂ ତା ପରେ ପରେ ସତ୍ୟବାଦୀ ବନ ବିଦ୍ୟାଳୟର ଏକପ୍ରକାର ପତନ ଆରମ୍ଭ ହୋଇଯାଇଥିଲା କହିଲେ ଚଳେ ।

୧୯୧୯ ମସିହା ଶେଷବେଳକୁ ସତ୍ୟବାଦୀର ମୂଳ ଶିକ୍ଷକ ଗୋଷ୍ଠୀ ମଧ୍ୟରେ ସାମାନ୍ୟ ହେଲେ ମଧ୍ୟ ମନୋମାଳିନ୍ୟ ସୃଷ୍ଟି ହୋଇଥିଲା ତାହା ଗୋପବନ୍ଧୁଙ୍କ ଦୃଷ୍ଟି ମଧ୍ୟକୁ ମଧ୍ୟ ଆସି ପାରିଥିଲା । ସତ୍ୟବାଦୀ ସ୍କୁଲର ପରିଚାଳନାରେ ସେଥିପାଇଁ ଅନେକଟା ପରିବର୍ତ୍ତନ କରିଥିଲେ ଗୋପବନ୍ଧୁ । ପଣ୍ଡିତ ନୀଳକଣ୍ଠଙ୍କ ସ୍ଥାନ ଆଚାର୍ଯ୍ୟ ହରିହର ଅଲଂକୃତ କରିଥିଲେ ଓ ସେହି ପଦବୀରେ ସେ ୧୯୨୩ ପର୍ଯ୍ୟନ୍ତ ରହିଥିଲେ । ତତ୍ ପୂର୍ବରୁ ପଣ୍ଡିତ ଗୋଦାବରୀଶ ୧୯୧୯-୧୯୨୦ ମସିହାରେ ସତ୍ୟବାଦୀ ଭୁକ୍ତ ପଣ୍ଡିତ

(୭) ସତ୍ୟବାଦୀଯୁଗ—ଅଧ୍ୟାପକ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟ, ପୃ ୩୪

ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ଓଡ଼ିଶାର ଏକ ବିଚ୍ଛିନ୍ନାଞ୍ଚଳ ସିଂହଭୂମି ଯାଇଥିଲେ ସେଠି ସୁପ୍ତ ଓଡ଼ିଆଙ୍କୁ ଜାଗ୍ରତ କରାଇବା ପାଇଁ । ଚକ୍ରଧରପୁରରେ ଏକ ଓଡ଼ିଆ ସ୍କୁଲ ସ୍ଥାପନ କରାଯାଇଥିଲା ସେ ଉଦ୍ଦେଶ୍ୟରେ ଏବଂ ଗୋଦାବରୀଶ ତାର ଦାୟିତ୍ୱ ନେଇଥିଲେ ।

ଅନ୍ୟ ଦିଗରେ ସତ୍ୟବାଦୀର ବନ ବିଦ୍ୟାଳୟକୁ ଏକ ଜାତୀୟ ବିଦ୍ୟାପୀଠରେ ପରିଣତ କରିବା ପାଇଁ ଗୋପବନ୍ଧୁ ଛାତ୍ର ଅଭିଭାବକମାନଙ୍କୁ ଡକାଇ ସେ ସମ୍ପର୍କରେ ଆଲୋଚନା ତଥା ମତାମତ ସଂଗ୍ରହ କରିଥିଲେ । ସେ ଅନୁଯାୟୀ ବନ ବିଦ୍ୟାଳୟ ୨୧ ଜାନୁୟାରୀ ୧୯୨୧ ମସିହାରେ ଜାତୀୟ ବିଦ୍ୟାପୀଠରେ ପରିଣତ ହୋଇଥିଲା । ସେଥିପାଇଁ ବିଦ୍ୟାଳୟର ବିଶେଷ ପରିବର୍ତ୍ତନ ନ ହେବାର କାରଣ ଥିଲା ମୂଳରୁ ଗୋପବନ୍ଧୁ ଜାତୀୟବାଦୀ ଥିବା କାରଣରୁ ସ୍ୱାଧୀନଭାବେ ଜୀବିକା ନିର୍ବାହ ପାଇଁ ଛାତ୍ରମାନଙ୍କୁ ଗୁଡ଼ାଏ ବୈଷୟିକ ତଥା ବ୍ୟାବହାରିକ ଶିକ୍ଷା ଦିଆଯାଉଥିଲା । ତେବେ ଆଉ କିଛି ଅଧିକ ବ୍ୟାବହାରିକ ଶିକ୍ଷାର ବ୍ୟବସ୍ଥା କରାଯାଇ ସତ୍ୟବାଦୀ ସ୍କୁଲ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା । ପୁଣି ତାହା ୧୯୨୩ ମସିହାରେ ଜାତୀୟ ମହାବିଦ୍ୟାଳୟରେ ପରିଣତ କରାଯାଇଥିଲା ।

୧୯୨୧ ମସିହାରେ ଯେତେବେଳେ ଗାନ୍ଧିଜୀ ପ୍ରଥମ ଥର ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର ଉଦ୍ଦେଶ୍ୟରେ ଓଡ଼ିଶା ଗସ୍ତରେ ଆସିଥିଲେ ଉତ୍କଳ ପାଇଁ ସେ ଗୋପବନ୍ଧୁଙ୍କ କର୍ମକେନ୍ଦ୍ର ସତ୍ୟବାଦୀ ଯାଇଥିଲେ । ତାଙ୍କର ବିଶ୍ରାମ ଲାଗି ଛୁରିଅନା କୁଞ୍ଜ ଟଳେ ବ୍ୟବସ୍ଥା କରାଯାଇଥିଲା ।

ମାର୍ଚ୍ଚ ୨୭ ତାରିଖ ଭୋର ସାଢ଼େ ଛଅଟା ବେଳେ ଯେତେବେଳେ ଗାନ୍ଧିଜୀ ସତ୍ୟବାଦୀ ଷ୍ଟେସନରେ ପହଞ୍ଚିଥିଲେ ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁ, ସତ୍ୟବାଦୀର ଛାତ୍ର ଓ ହଜାର ହଜାର

ଜନତା ତାଙ୍କୁ ଫୁଲମାଳ ଦେଇ ଅଭ୍ୟର୍ଥନା ଜଣାଇଥିଲେ । ଅପରାହ୍ନ ଦୁଇଟା ବେଳେ ଏକ ସାଧାରଣ ସଭାରେ ଗୋପବନ୍ଧୁ ପ୍ରାରମ୍ଭିକ ଭାଷଣ ଦେବା ପରେ ଗାନ୍ଧିଜୀ ଭାଷଣ ଦେଇଥିଲେ ଓ ତନିମିତ୍ତ ସ୍ୱରାଜ୍ୟ ପାଣ୍ଠି ସଂଗ୍ରହ କରିଥିଲେ । ଦୁର୍ଭିକ୍ଷ ଓ ଦାରିଦ୍ର୍ୟର କଷାଘାତରେ ନିପୀଡ଼ିତ ଜନତାର ବ୍ୟବହାର ତଥା ଯଥାଶକ୍ତି ଦାନରେ ସେ ମୁଗ୍ଧ ହୋଇ ପଡ଼ିଥିଲେ ।

ଓଡ଼ିଶାରୁ ଫେରିଗିବା ପରେ ପରେ ସତ୍ୟବାଦୀର ବନ ବିଦ୍ୟାଳୟ ସମ୍ପର୍କରେ ତାଙ୍କ 'ୟଙ୍ଗ୍ ଇଣ୍ଡିଆ'ରେ ଲେଖିଥିଲେ "ପୁରୀଠାରୁ ବାର ମାଇଲ ଏପଟେ ସାକ୍ଷୀଗୋପାଳଠାରେ ପଣ୍ଡିତ ଗୋପବନ୍ଧୁଙ୍କର ଏକ ମୁକ୍ତାକାଶ ଶିକ୍ଷାନୁଷ୍ଠାନ ରହିଛି । ତାହା ଗୋଟିଏ ବନ ବିଦ୍ୟାଳୟ । ମୁଁ ସେଠାରେ ଶିକ୍ଷକ ଓ ଛାତ୍ରମାନଙ୍କ ଗହଣରେ ପରମ ଆନନ୍ଦ ଭିତରେ ଦିନଟିଏ ବିତାଇଲି । ମୁକ୍ତାକାଶ ତଳେ ଶିକ୍ଷା ଦେବାରେ ଏହା ଏକ ପରୀକ୍ଷାମୂଳକ ତଥା ଗୁରୁତ୍ୱପୂର୍ଣ୍ଣ ଉଦ୍ୟମ । ସେଠାରେ ଅନେକ ଛାତ୍ରଙ୍କୁ ବ୍ୟାୟାମ ଖେଳରେ ଅନେକ ଶକ୍ତିଶାଳୀ ଦେହଳୁଆଡ଼ ହୋଇପାରି ଥିବାର ଦେଖିଲି । ଏପରି କି ଦଶଟଙ୍କାରେ ମାତ୍ର ଏମାନେ (ଶିକ୍ଷକମାନେ) ଖାଇବାକୁ ଖୋରାକୀ ପାଇ କାର୍ଯ୍ୟ କରୁଛନ୍ତି । ଏଭଳି ନିସ୍ୱାର୍ଥପର କର୍ମୀ, ଶିକ୍ଷକ ଓ ଛାତ୍ର ଯଦି ଦେଶରେ ଉପୁଜିବେ ତେବେ ବର୍ଷକ ଭିତରେ ସ୍ୱରାଜ୍ୟ ଲାଭ କରିବା କିଛି ବିସ୍ମୟକର କଥା ନୁହେଁ ବୋଲି ମୋର ବିଶ୍ୱାସ ।"

ସେହି ବନ ବିଦ୍ୟାଳୟ, ମୁକ୍ତାକାଶ ତଳର ବିଦ୍ୟାଳୟ କିନ୍ତୁ ଜାତୀୟ ବିଦ୍ୟାଳୟ ଓ ପରେ ପରେ ଜାତୀୟ ମହାବିଦ୍ୟାଳୟ ହେବା ବେଳକୁ ସତ୍ୟବାଦୀରୁ ପଣ୍ଡିତ ଗୋଦାବରୀଶଙ୍କ ବ୍ୟତୀତ ପଣ୍ଡିତ ନୀଳକଣ୍ଠ ମଧ୍ୟ ଚାଲିଯାଇଥିଲେ । ସବୁଠାରୁ ଉଲ୍ଲେଖନୀୟ ଥିଲା ପଣ୍ଡିତ ଗୋପବନ୍ଧୁ ନିଜେ ନିଜେ ମଧ୍ୟ ଅଧିକ ଧ୍ୟାନ ଦେଇପାରୁ ନଥିଲେ । କାରଣ ଦେଶର ବୃହତ୍ତର ସ୍ୱାର୍ଥ ପାଇଁ ସେ ନିଜକୁ ନିୟୋଜିତ କରି ସାରିଥିଲେ ସେତେ-ବେଳକୁ । ଫଳତଃ କଲେଜ ପରିଚାଳନାରେ ଆର୍ଥିକ ଅଭାବ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ତେଣୁ କର୍ତ୍ତୃପକ୍ଷ ବାଧ୍ୟ ହୋଇ ପୁଣି ତାହାକୁ ସରକାରୀ ସ୍କୁଲରୂପେ ମଞ୍ଜୁରୀ ଦେବାକୁ ବିଶ୍ୱବିଦ୍ୟାଳୟକୁ ଆବେଦନ

କରିଥିଲେ । ତା ଫଳରେ ସ୍କୁଲ ପରିଚାଳନା ପାଇଁ ସରକାରୀ ସାହାଯ୍ୟ ମିଳିଥାନ୍ତା । କିନ୍ତୁ ପୁଣି ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ସେଥିଲାଗି ଗୁଡ଼ାଏ ସର୍ତ୍ତ ଦାବୀ କରିବା ଫଳରେ ଉଭୟ ଅନୁଷ୍ଠାନ ମଧ୍ୟରେ ଅନେକ କାଳ ପର୍ଯ୍ୟନ୍ତ କାଗଜପତ୍ରରେ ଯୁଦ୍ଧ ଚାଲିଥିଲା । ପରିଶେଷରେ ଅନ୍ୟ କୌଣସି ଉପାୟ ନଦେଖି ପରିଚାଳକମାନେ ୧୯୨୬ ମସିହାରେ ବନ ବିଦ୍ୟାଳୟକୁ ପୁରାପୂରି ବନ୍ଦ କରିଦେବାକୁ ବାଧ୍ୟ ହୋଇଥିଲେ ।

ଏକ ଯୁଗାନ୍ତକାରୀ ଆଲୋଡ଼ନ ଏକଦା ସୃଷ୍ଟି କରିଥିବା ସତ୍ୟବାଦୀର ବନ ବିଦ୍ୟାଳୟ ଇତିହାସର ଏକ ଫସିଲ୍ ହୋଇଯାଇଥିଲା ।



।। ଆଠ ।।

# ନିଜ ସ୍ୱାର୍ଥ ଲାଗି ଜାତି ନୁହେ ହିନ୍ଦୁ

ଜାତିର ପିତା ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଯେଉଁ କେତେଜଣ ଯୁବକ ସେମାନଙ୍କ ସମସ୍ତ ସ୍ୱପ୍ନର ବୃତ୍ତିକୁ ଠୁକ କରି ଅସହଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଉତ୍କଳମଣି ଥିଲେ ଅଗ୍ରଣୀ । ଯେତେବେଳେ ୧୯୨୧ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ବେଜୱାଡ଼ା ଅଧିବେଶନରେ ଓଡ଼ିଆମାନଙ୍କୁ ଓଡ଼ିଶାର ପ୍ରତିନିଧି ହିସାବରେ ପ୍ରଥମଥର ପାଇଁ ସ୍ଥାନ ଦିଆଯାଇଥିଲା, ସେତେବେଳେ ଆନନ୍ଦରେ ଫାଟି ପଡ଼ିଥିଲେ ସେ । ତାଙ୍କର ମତ ଥିଲା ଅନେକ ଦିନ ପରେ ହେଲେମଧ୍ୟ ଓଡ଼ିଶା ଭାରତର ଅନ୍ୟାନ୍ୟ ପ୍ରଦେଶମାନଙ୍କ ସହିତ ସମକକ୍ଷ ହେଲା । "ଭାରତୀୟ ଜାତୀୟ ପାର୍ଲିମେଣ୍ଟରେ ଓଡ଼ିଶା ଏତେଦିନେ ସ୍ଥାନ ପାଇଲା; ଅନ୍ୟ କୋଉଏଠି ପ୍ରଦେଶ ଏହାର ସ୍ୱାତନ୍ତ୍ର୍ୟ ସ୍ୱୀକାର କଲେ ।"

ତା ପୂର୍ବରୁ ଉତ୍କଳବାସୀଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ଗୋପବନ୍ଧୁ ଜନଗଣଙ୍କ ସେବାରେ ନିଜକୁ ସମ୍ପୂର୍ଣ୍ଣରୂପେ ନିୟୋଜିତ କରି ସାରିଥିଲେ । ସେଥିପାଇଁ ତାହାଙ୍କ ଏକ ପ୍ରଧାନ ମାଧ୍ୟମ ଥିଲା ଉତ୍କଳ ସମ୍ମିଳନୀ । କୁଳବୃଦ୍ଧ ମଧୁସୂଦନଙ୍କୁ ସେ ଗୁରୁତୁଲ୍ୟ ଭକ୍ତି କରୁଥିଲେ । ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ କିପରି ଏକ ଭୌଗୋଳିକ ସୀମା ମଧ୍ୟରେ ଆବଦ୍ଧ ହୋଇପାରିବ ଏବଂ ସେମାନଙ୍କ ସାଧାରଣ ଜୀବନର ମାନ କିପରି ଉନ୍ନତ ହୋଇପାରିବ ତାହାହିଁ ତାଙ୍କର ପ୍ରଧାନ ଲକ୍ଷ୍ୟ । ତଦ୍‌ବ୍ୟତୀତ ଓଡ଼ିଶା ଥିଲା ଏକ ବନ୍ୟା ଓ ମରୁଡ଼ିର ଦେଶ । ଦେଶର ଜନସାଧାରଣଙ୍କ ସଖା ଏବଂ ସମସ୍ତ ବିପଦ ବେଳର ବନ୍ଧୁ ଥିଲେ ଗୋପବନ୍ଧୁ । ବିପଦର ବନ୍ଧୁ ଗୋପବନ୍ଧୁ ଦେଶର ପରାଧୀନତା ଶୃଙ୍ଖଳକୁ ଛିନ୍ନ କରିବାପାଇଁ ଭବିଷ୍ୟତର ସୈନିକ ମଧ୍ୟ ତିଆରି କରୁଥିଲେ । ସେ ସୈନିକମାନଙ୍କୁ ଅସ୍ତ୍ରଶସ୍ତ୍ରରେ ବଳୀୟାନ୍

କରାଯିବାର ଉଦ୍ଦେଶ୍ୟ ନଥିଲା; ଥିଲା ଉପଯୁକ୍ତ ଶିକ୍ଷାଦେଇ ମନୋବଳରେ ଦୃଢ଼ୀ କରାଇବା । ସେଥିପାଇଁ ଆରମ୍ଭ ହୋଇଥିଲା ସତ୍ୟବାଦୀ ବିଦ୍ୟାଳୟ ଓ ତାର ଶାଖା ଗଠିତ ହୋଇଥିଲା ସିଂହଭୂମିର ଚକ୍ରଧରପୁର ତଥା ମେଦିନୀପୁରର ବାହାଡ଼ାଗୋଡ଼ାଠାରେ । ସେସବୁ ଗୁଡିକର କର୍ମକର୍ତ୍ତାଙ୍କ ସହିତ ସମ୍ପର୍କ ଅତି ଘନିଷ୍ଠ, ଅତି ନିକଟତମ ଥିଲା ।

ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନରେ ସକ୍ରିୟଭାବେ ଅଂଶଗ୍ରହଣ କରିବା ନିଷ୍ପତ୍ତି ନେବାପରେ ଗୋପବନ୍ଧୁ ଚାହିଁଥିଲେ ସେ ସବୁ ଅନୁଷ୍ଠାନରୁ କିଛି କିଛି ଦୂରେଇ ଯିବେ । କିନ୍ତୁ ତାହା ଏକାଦିନେ ସମ୍ଭବ କିପରି ହୁଅନ୍ତା ? ସେ ନିଷ୍ପତ୍ତି ନେବା ପୂର୍ବରୁ ଗୋପବନ୍ଧୁ ଲକ୍ଷ୍ନୌ ଯାଇଥିଲେ । ଲକ୍ଷ୍ନୌରୁ ଫେରି ସତ୍ୟବାଦୀରେ ତାଙ୍କ କୋଠରୀରେ ପାଖ ୧୫ ଦିନ କାଳ ତୁନିହୋଇ ବସି ରହିଲେ । କାହା ସଙ୍ଗେ କଥାବାର୍ତ୍ତା କିଛି ନାହିଁ । ତା ପରେ ଯେତେବେଳେ ଉଠିଲେ ବିଭିନ୍ନ ଅନୁଷ୍ଠାନରୁ ନିଜକୁ ବିଚ୍ଛିନ୍ନ କରି ଦେଇଥିଲେ । ସେତିକବେଳେ ବିହାର କାଉନ୍‌ସିଲ୍ ସଭ୍ୟ ପଦରୁ ମଧ୍ୟ ଇସ୍ତଫା ଦେଇଥିଲେ ।

ସେଠଉଁ ଆରମ୍ଭ ହେଲା କଂଗ୍ରେସ ପ୍ରଚାର । ନିଜର ସମସ୍ତ ଶକ୍ତି ଖଟାଇ ଭାରତୀୟ ଜାତୀୟ କଂଗ୍ରେସର ନୀତି ତଥା କାର୍ଯ୍ୟକ୍ରମର ପ୍ରଚାର ଓଡ଼ିଶାରେ ଆରମ୍ଭ କରିଥିଲେ ସେହିଦିନଠାରୁ । ସ୍କୁଲ କଲେଜର ଛାତ୍ରମାନଙ୍କୁ ନିଜ ଚିନ୍ତାଧାରାରେ ଅନୁପ୍ରାଣିତ କରିବା ପାଇଁ ଉଦ୍ୟମ କରିଥିଲେ । ଯୁବକମାନଙ୍କୁ ଜାତୀୟ ଚିନ୍ତାଧାରା ସହିତ ସମତାଳ ଦେଇ ଭାରତୀୟ ଜାତୀୟ ପ୍ରବାହକୁ ଓଡ଼ିଶାରେ ଚାଲୁ ରଖିବା ପାଇଁ ଆହ୍ୱାନ ଦେଇଥିଲେ ଓ ସର୍ବୋପରି ଓଡ଼ିଶାବାସୀଙ୍କୁ ଦେଶୀୟ ସୀମାରୁ ବାହାର ଯାଇ ରାଷ୍ଟ୍ରୀୟ ପରିସୀମା ସହିତ ସାମିଲ୍ କରିବା ପାଇଁ ଉଦ୍ୟମ କରିଥିଲେ । ଜାତୀୟ କଂଗ୍ରେସର ଏକ ନୀତି ତଥା ମହାତ୍ମାଗାନ୍ଧିଙ୍କ ଧ୍ୱନି— ନିଜେ ନିଜେ ସୂତାକାଟି ବସ୍ତ୍ର ତିଆରି କରିବା ଲାଗି ପ୍ରଚାର କରିଥିଲେ ।

ପ୍ରାୟ ୧୯୨୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ନେତୃସ୍ଥାନୀୟ ବ୍ୟକ୍ତି-ମାନଙ୍କର ଏକମାତ୍ର ସାମାଜିକ ତଥା ରାଜନୈତିକ ଲକ୍ଷ୍ୟଥିଲା କେବଳ

ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଏକତ୍ରୀକରଣ ଓ ଓଡ଼ିଆମାନଙ୍କର ଉନ୍ନତି । କେବଳ ଗୋପବନ୍ଧୁ ସମ୍ପୂର୍ଣ୍ଣ ରୂପେ ଭାରତୀୟ ଜାତୀୟ ଭାବଧାରାରେ ନିଜକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରି ଦେଇଥିଲେ । ତାହାଙ୍କ ସମର୍ଥକ ତଥା ଅନୁଗାମୀମାନେ ତାହାଙ୍କ ପ୍ରଦର୍ଶିତ ମାର୍ଗରେ ମନ ପ୍ରାଣ ଢ଼ାଳି କାର୍ଯ୍ୟ କରୁଥିଲେ ନିଶ୍ଚୟ ।

ଭାରତୀୟ ସାମାଜିକ ଜୀବନରେ ଯେଉଁ ରାଜନୈତିକ ଝଡ଼ ଝଞ୍ଜା, ପ୍ରବଳ ବେଗରେ ବହିବାକୁ ଲାଗିଥିଲା, ତା'ର ଯେ କୌଣସି ପ୍ରଭାବ ଓଡ଼ିଶା ଉପରେ ପଡ଼ିନଥିଲା ତା' ନୁହେଁ । ସେଇ ଆନ୍ଦୋଳନ ସାଙ୍ଗକୁ ଗୋପବନ୍ଧୁଙ୍କ କାର୍ଯ୍ୟକଳାପ ଶିକ୍ଷିତ ଜନମାନସରେ ପ୍ରଭାବ ପକାଇ ସାରିଥିଲା ମଧ୍ୟ । ସେତେବେଳକୁ ଉଦୀୟମାନ ଯୁବକମାନଙ୍କ ମଧ୍ୟରୁ ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ ପ୍ରମୁଖମାନଙ୍କ ସକ୍ରିୟ ଉଦ୍ୟମରେ କଟକଠାରେ ଗଠିତ ହୋଇଥିଲା ଗୋଟିଏ ପାଠାଗାର—ଭାରତୀ ମନ୍ଦିର । ସେତେବେଳେ ଯେଉଁମାନଙ୍କ ପ୍ରେରଣାରେ ତାହା ପରିପୁଷ୍ଟ ହୋଇ ଉଠିଥିଲା ସେମାନଙ୍କ ମଧ୍ୟରେ ଥିଲେ ଓକିଲ ଶ୍ରୀ ଭଗିରଥି ମହାପାତ୍ର ଓ ଇଂରେଜ ସରକାରଙ୍କ ଜଣେ ଅଫିସର ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ପ୍ରମୁଖମାନେ । କେବଳ ପତ୍ରପତ୍ରିକା ବା ବହି ପାଠ କରିବାରେ ସେହି ଅନୁଷ୍ଠାନର କାର୍ଯ୍ୟକଳାପ ସୀମିତ ନଥିଲା । ସାମାଜିକ ସେବାଠାରୁ ଆରମ୍ଭ କରି ଦେଶର ରାଜନୈତିକ ଗତିବିଧିର ଧାରା ଅନୁଧ୍ୟାନ କରିବା ପର୍ଯ୍ୟନ୍ତ ସଭ୍ୟମାନେ ତତ୍ପର ହୋଇ ଉଠୁଥିଲେ । ସେଇଥିପାଇଁ, କଲିକତାଠାରେ ଅନୁଷ୍ଠିତ ହେଉଥିବା କଂଗ୍ରେସ ଅଧିବେଶନରେ ଆଲୋଚନା ଇତ୍ୟାଦି ଲକ୍ଷ୍ୟ କରିବା ପାଇଁ ଏହି ଅନୁଷ୍ଠାନର ପ୍ରତିନିଧି ହିସାବରେ ଯୋଗ ଦେଇଥିଲେ ଡ଼ଃ ହରେକୃଷ୍ଣ ମହତାବ ।

ଗାନ୍ଧିଜୀ ତଥା ଭାରତୀୟ ଜାତୀୟ କଂଗ୍ରେସ ଆରମ୍ଭ କରିଥିବା ଅହିଂସାତ୍ମକ ନୀତିରେ ଇଂରେଜ ସରକାରଙ୍କ ସହିତ ସହଯୋଗ ନକରିବା ପାଇଁ ଆନ୍ଦୋଳନ 'ଅସହଯୋଗ'ର ଅର୍ଥ ବୁଝାଇବା ପାଇଁ କଟକ

କାଟଯୋଡ଼ ନଈବାଲିରେ ପ୍ରଥମେ ସଭା ଆହୂତ ହୋଇଥିଲା ୧୯୨୧ ମସିହା ଜାନୁୟାରୀ ୨୫ ତାରିଖ ଦିନ । ଗୋପବନ୍ଧୁ ପ୍ରାଞ୍ଜଳ ଭାବରେ ଆନ୍ଦୋଳନ ସମ୍ପର୍କରେ ମର୍ମ ଛୁଆଁ ଭାଷାରେ ବୁଝାଇ ଦେଇଥିଲେ । ତା ପରେ ଆହ୍ୱାନ ଦେଇଥିଲେ ସେହି ଆନ୍ଦୋଳନରେ ସହଯୋଗ କରିବା ପାଇଁ—ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେବାପାଇଁ ।

ସେ ଆହ୍ୱାନ ନିରର୍ଥକ ହୋଇ ନଥିଲା । ଗୋପବନ୍ଧୁଙ୍କ ଆଶା ମରୀଚିକାରେ ପରିଣତ ହୋଇ ନଥିଲା । ଭାରତୀ ମନ୍ଦିରର ପ୍ରାୟ ସମସ୍ତ ସଭ୍ୟ ପାଠପଢ଼ା ଛାଡ଼ିଦେଇ ଖପ୍ ଝାପ୍ ହୋଇ ପଡ଼ିଥିଲେ ଗୋପବନ୍ଧୁଙ୍କ ନିକଟକୁ । ଡ଼ାକ୍ତର ମହତାବ୍, ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ନାରାୟଣ ବୀରବର ସାମନ୍ତ, ବଂଶୀଧର ମିଶ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, କରୁଣାକର ପାଣିଗ୍ରାହୀ ପ୍ରମୁଖମାନଙ୍କ ବ୍ୟତୀତ ଗୋପବନ୍ଧୁ ଚୌଧୁରୀ ସରକାରୀ ହାକିମ ପଦ ତ୍ୟାଗକରି ଜାତୀୟ ମୁକ୍ତି ଆନ୍ଦୋଳନରେ ଝାସ ଦେବା ସଙ୍ଗେ ସଙ୍ଗେ ଭାଗୀରଥି ମହାପାତ୍ର ଆଇନ ବ୍ୟବସାୟ ବର୍ଜନ କରିଥିଲେ । ଏବଂ ସେମାନଙ୍କ ହାତମୁଠାକୁ ଟାଣି କରିଥିଲେ ଜାତୀୟ କବି ବୀରକିଶୋର ଦାସ, ମହମ୍ମଦ ହନିଫ୍‌ଙ୍କ ଭଳି ଆହୁରି ଅନେକ । ସେମାନଙ୍କ ନିକଟରେ ସରକାରୀ ଚାକିରିର ମୋହ ନଥିଲା କିମ୍ବା ନଥିଲା ଧନ ଅର୍ଜନ କରିବାର ଅଭିଳାଷ । ଓଡ଼ିଶାର ଏକ ପ୍ରାନ୍ତରୁ ଆରମ୍ଭ କରି ଅନ୍ୟ ଏକ ପ୍ରାନ୍ତ ପର୍ଯ୍ୟନ୍ତ ଏକ ନୂତନ ଜାଗରଣ ।

ସେ ଦିନର ସତ୍ୟବାଦୀ ପ୍ରେସ୍‌ରେ ୧୯୨୧ ମସିହା ମାର୍ଚ୍ଚ ୧୩ ତାରିଖ ଦିନ ଗୋପବନ୍ଧୁଙ୍କ ପ୍ରସ୍ତାବକ୍ରମେ ଗୋଟିଏ ବୈଠକର ଆୟୋଜନ କରାଯାଇଥିଲା । ଉଦ୍ଦେଶ୍ୟ—ବିଧିବଦ୍ଧଭାବେ କଂଗ୍ରେସ ଅନୁଷ୍ଠାନ ଓଡ଼ିଶାରେ ଗଠନ କରାଯିବ । ତାହାହିଁ ଥିଲା ଓଡ଼ିଶାରେ ଜାତୀୟ କଂଗ୍ରେସର ପ୍ରଥମ କମିଟି । ଉକ୍ତ କମିଟିରେ ସଭାପତି ରହିଲେ ପଣ୍ଡିତ ଗୋପବନ୍ଧୁ, ଉପ-ସଭାପତି ରହିଲେ ଡ଼ଃ ଏକରାମ-ରସୁଲ, ଯୁଗ୍ମ ସମ୍ପାଦକ ହେଲେ ଭାଗୀରଥି ମହାପାତ୍ର ଓ ବ୍ରଜସୁନ୍ଦର ଦାସ, ଏବଂ ସଭ୍ୟଭାବେ ରହିଲେ ନିରଞ୍ଜନ ପଟ୍ଟନାୟକ, ହରେକୃଷ୍ଣ ମହତାବ ଏବଂ ଜଗବନ୍ଧୁ

ସିଂହ । କେବଳ ସେତିକି ନୁହେଁ, ପ୍ରଥମ ଥର ପାଇଁ ଭାରତୀୟ ଜାତୀୟ କଂଗ୍ରେସ କମିଟି ଲାଗି ବାର ଜଣ ସଭ୍ୟ ମଧ୍ୟ ନିର୍ବାଚିତ ହୋଇଥିଲେ । ସେଥିରେ ଓଡ଼ିଶା ପାଇଁ ଗଠିତ ହୋଇଥିବା କମିଟିର ପାଞ୍ଚଜଣ କର୍ମକର୍ତ୍ତାଙ୍କ ବ୍ୟତୀତ ରହିଲେ ପଣ୍ଡିତ ନୀଳକଣ୍ଠ ଦାସ, ଗୋପବନ୍ଧୁ ଚୌଧୁରୀ, ଅଟଳ ବିହାରୀ ଆଚାର୍ଯ୍ୟ, ବ୍ରଜମୋହନ ପଣ୍ଡା ଏବଂ ନୀଳକଣ୍ଠ ଦାସ ଚୌଧୁରୀ ।

ଓଡ଼ିଶା ପ୍ରଦେଶ ପାଇଁ ଯେଉଁ କଂଗ୍ରେସ କମିଟି ସେଦିନ ଗଠିତ ହୋଇଥିଲା ସେଥିରେ ଓଡ଼ିଶା ପ୍ରଦେଶର ଅର୍ଥ କେବଳ ତତ୍କାଳୀନ ରାଜନୈତିକ ଓଡ଼ିଶାରେ ଥିବା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ନଥିଲା ଥିଲା ମଧ୍ୟ ପ୍ରାକୃତିକ ଓଡ଼ିଶା ମଧ୍ୟରେ ଥିବା ଗଞ୍ଜାମ, ମେଦିନୀପୁର ଏବଂ ସିଂହଭୂମି । କଂଗ୍ରେସ କମିଟିରେ ସବୁ ଅଞ୍ଚଳର ସଦସ୍ୟ ପ୍ରତିନିଧିତ୍ୱ କରିଥିଲେ ।

ଏବଂ ସେହିଦିନଠାରୁ ଯେଉଁ ଦିନରୁ ପରିଚିତ ଥିବା ସତ୍ୟବାଦୀ ମେସ୍ ଆଉ ସତ୍ୟବାଦୀ ମେସ୍ ହୋଇ ରହି ନଥିଲା, ହୋଇଥିଲା ସମଗ୍ର ଓଡ଼ିଶାବାସୀଙ୍କ ଆଶା, ଆକାଂକ୍ଷାର କେନ୍ଦ୍ରସ୍ଥଳ ସ୍ୱରାଜ୍ୟ ଭବନ । ମୂର୍ତ୍ତି ସୃଜନ ସଂଗ୍ରହ ହୋଇ ସେହି ଅନୁଷ୍ଠାନ ପରିଚାଳିତ ହେବ ବୋଲି ସ୍ଥିର ହୋଇଥିଲା । ତାହାର ପରିଚାଳନା ଭାର ଗ୍ରହଣ କରିଥିଲେ ଡ଼କ୍ଟର ଅଟଳ ବିହାରୀ ଆଚାର୍ଯ୍ୟ ଓ ପୁରୀର ଜଗନ୍ନାଥ ରଥ ।

ନାଗପୁର କଂଗ୍ରେସ ଅଧିବେଶନରେ ଗୃହୀତ ହୋଇଥିବା ପ୍ରସ୍ତାବ ଅନୁସାରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର ପାଇଁ କଟକର କାଠଯୋଡ଼ି ନଦୀର ହନୁମାନ ଘାଟ ନିକଟରେ ଜନମୁକ୍ତ ଆକାଶତଳେ, ନଦୀର ବାଲୁକାଶଯ୍ୟା ଉପରେ ସାଧାରଣ ସଭାର ଆୟୋଜନ ହେଉଥିଲା ନିତି ନିତି । ଓଡ଼ିଶା କଂଗ୍ରେସର ସଭାପତି ପଣ୍ଡିତ ଗୋପବନ୍ଧୁ ଓଡ଼ିଶାରେ ଜନ ଜାଗରଣ ଅଣାଇବା ଲାଗି ପ୍ରତିଦିନ ସେ ସଭାରେ ଭାଷଣ ଦେଉଥିଲେ ଏବଂ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ଅତି ମନଛୁଆଁ ଭାଷାରେ ଉପସ୍ଥାପିତ କରୁଥିଲେ । କି ଯୁବ, କି ଜନତା ସମସ୍ତେ ଏକଜୁଟ ହେଉଥିଲେ ତାଙ୍କର ସମ୍ମୋହନ ଶକ୍ତି ବଳରେ ଭାଷଣ ଶୁଣିବା ପାଇଁ ।

ଗାନ୍ଧିଜୀ ସମଗ୍ର ଭାରତ ବୁଲି ବୁଲି ସେଥି ଅସହଯୋଗ ସୂତ୍ରରେ ସ୍ୱରାଜ୍ୟ ଲାଭ କରିବା ଆଶା ପୋଷଣ କରି ଜନମତ ଜାଗ୍ରତ କରାଇବାରେ ଲାଗି ପଡ଼ିଥିଲେ । ସେହି ଉଦ୍ଦେଶ୍ୟରେ ୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖରେ ପ୍ରଥମଥର ଲାଗି ଓଡ଼ିଶା ମଧ୍ୟ ଆସିଥିଲେ । କଟକ ଷ୍ଟେସନଠାରେ ତାଙ୍କୁ ସ୍ୱାଗତ କରିବା ପାଇଁ ଉପସ୍ଥିତ ଥିଲେ ଗୋପବନ୍ଧୁ । ଭାରତର ଅବିସମ୍ବାଦୀ ନେତା ଭାବରେ ଗାନ୍ଧିଜୀ ସେତେବେଳକୁ ଗୃହୀତ ହୋଇ ସାରିଥିଲେ । ଓଡ଼ିଶା ଆସିବା ଅବସରରେ ଦିନକ ଆଗରୁ କେବଳ ତାହାଙ୍କ ଦର୍ଶନ ନିମିତ୍ତ ହଜାର ହଜାର ଆବାଳବୃଦ୍ଧବନିତା କଟକ ସହରରେ ଖୁନ୍ଦ ହୋଇ ପଡ଼ିଥିଲେ । ଠିକ ସେମିତି ଆଉ ଏକ ଜନ ସମାବେଶ ହୋଇଥିଲା ୧୯୨୨ ମସିହାରେ । ସେତେବେଳେ ଭାରତର ବଡ଼ଲାଟ ଲର୍ଡ ହାର୍ଡିଞ୍ଜ କଟକ ଆସିଥିଲେ । ସେତେବେଳକାର ପରିସ୍ଥିତି କିନ୍ତୁ ଅଲଗା ଥିଲା । ଇଂରେଜ ସରକାରଙ୍କ ଅନୁଗତ ରାଜା ଏବଂ ଜମିଦାରମାନେ ସେମାନଙ୍କ ଠାଟ ବାଟ ନେଇ କଟକ ସହରରେ ଉପସ୍ଥିତ ହୋଇଥିଲେ । ପୋଲିସ ଓ ସୈନ୍ୟ ଗହଳିରେ ସାରା ସହର ରଙ୍ଗୀନ୍ ହୋଇ ଉଠିଥିଲା । ଭାରତର ସର୍ବାଧିକାରୀ ଲାଟ ଖୋଦ୍ ମୁଖ୍ୟ ଆସୁଛନ୍ତି । ନଗରପାଳର କଡ଼ା ବ୍ୟବସ୍ଥା ହେବା ଦରକାର । କିନ୍ତୁ ତାର ପ୍ରାୟ ନଅବର୍ଷ ପରେ ଯେତେବେଳେ ୧୯୩୧ ମସିହାରେ ସାଧାରଣ ଜନଗଣଙ୍କ ସମ୍ରାଟ୍ ଆସିଥିଲେ, ସେତେବେଳେ ଜନତା କେବଳ ତାର ଦର୍ଶନ ପାଇଁ ଏବଂ ଟିକିଏ ପଦଧୂଳି ନେବା ପାଇଁ ଆନ୍ତରିକ କାମନା କରିଥିଲା । ନଗରପାଳ ପାଇଁ ସେନାବାହିନୀର ପ୍ରଶ୍ନ ନଥିଲା କିମ୍ବା ତାର ମିଜାଜ୍ ଖୁସି କରାଇବା ପାଇଁ କୌଣସି ଉଦ୍ୟମ କରାଯାଇ ନଥିଲା । ତାହା ହିଁ ଥିଲା ଉଭୟ ଜନସମାଗମ ମଧ୍ୟରେ ପାର୍ଥକ୍ୟ ।

ସେଦିନ ଭୋରରେ କଟକ ଷ୍ଟେସନରେ ଗାଡ଼ି ପହଞ୍ଚିବା ପରେ ପରେ ଏକ ତୃତୀୟ ଶ୍ରେଣୀ ଡବାରେ ଗାନ୍ଧିଜୀ ଓ କସ୍ତୁରବାଙ୍କୁ ଓଡ଼ିଶାର ଜନଗଣଙ୍କ ତରଫରୁ ଗୋପବନ୍ଧୁ ଫୁଲମାଳ ଦେଇ ପାଛୋଟି ଆଣିଥିଲେ । କିନ୍ତୁ ଷ୍ଟେସନରେ ଯେଉଁ ପ୍ରବଳ ଜନସମାଗମ, ତା ଭିତରେ ଜନତାର ଭିଡ଼ ଠେଲି ବାହାରକୁ ଯିବା ସମ୍ଭବପର ହୋଇ ପାରି ନଥିଲା । ତେଣୁ

ଗାନ୍ଧିଜୀଙ୍କୁ ବିଶ୍ରାମ କକ୍ଷରେ କିଛି ସମୟ ଅଟକାଇବା ପାଇଁ ଏକ ପ୍ରକାର ବାଧ୍ୟ ହୋଇଥିଲେ ଗୋପବନ୍ଧୁ । କିନ୍ତୁ କେତେ ସମୟ ? ବାଧ୍ୟ ହୋଇ ଜନତାର ଭିଡ଼ ଭିତରେ ଧୀରେ ଧୀରେ ଷ୍ଟେସନ ବାହାରକୁ ଆସି ସେମାନେ ଗାଡ଼ିରେ ବସିଲେ । ଅତି ଧୀରେ ଧୀରେ ଗାଡ଼ି ସ୍ୱରାଜ୍ୟ ଆଶ୍ରମକୁ ଆଗେଇଲା । ଆଗରେ ଅସଂଖ୍ୟ ସଂକୀର୍ତ୍ତନର ଦଳ । ପାଖରେ ଗୋପବନ୍ଧୁ । ଗାଡ଼ି ପାଖରେ ହଜାର ହଜାର ଦର୍ଶନାଭିଳାଷୀ ସ୍ତ୍ରୀ ପୁରୁଷ, ବାଳକ ବାଳିକା ।

ସେ ଦିନ ସନ୍ଧ୍ୟା ସାଢ଼େ ପାଞ୍ଚଟାବେଳେ କାଠଯୋଡ଼ୀ ନଦୀକୂଳସ୍ଥ ଗଣେଶ ଘାଟ ନିକଟରେ ବାଲିଶେଯ ଉପରେ ଏକ ବିରାଟ ସାଧାରଣ ସଭା ହୋଇଥିଲା । କାଠର ମଞ୍ଚ ତିଆରି ହୋଇ ତା ଉପରେ ଖଣ୍ଡିଏ ଚଉକି ପଡ଼ିଥିଲା ଗାନ୍ଧିଜୀଙ୍କ ପାଇଁ । ସଭା ଆରମ୍ଭରେ ଗୋପବନ୍ଧୁ ପ୍ରାରମ୍ଭିକ ଭାଷଣ ଦେଇ ଜନତାଙ୍କୁ ଗାନ୍ଧିଜୀଙ୍କ ସହିତ ବୁଦ୍ଧ, ରାମାନୁଜ, କବୀର, ଶଙ୍କର, ନାନକ ପ୍ରମୁଖଙ୍କୁ ତୁଳନା କରି କହିଥିଲେ ଯେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଯେପରି ଗୋଟିଏ ଗୋଟିଏ ଧର୍ମପ୍ରଚାର କରିବାଲାଗି ଓଡ଼ିଶା ପରିଭ୍ରମଣରେ ଆସିଥିଲେ ସେହିପରି ଗାନ୍ଧିଜୀ ମଧ୍ୟ ଏଠାକୁ ଆସିବାର ଉଦ୍ଦେଶ୍ୟ ରାଜନୀତି-ଧର୍ମନୀତି ପ୍ରଚାର ଏବଂ ତାଙ୍କ ପ୍ରଚାରିତ ରାଜନୀତିରେ କୁଟ ରାଜନୀତିର ପ୍ରଶ୍ନ ଉଠି ନପାରେ । ଗାନ୍ଧିଜୀଙ୍କର ଏକ ପ୍ରଧାନ ନୀତିରୂପେ ଅହିଂସା ଗୃହୀତ ହୋଇଥିବାର ମଧ୍ୟ ସେ ସମବେତ ଜନତାଙ୍କୁ ସୂଚନା ଦେଇଥିଲେ ।

ତା ପରେ ଗାନ୍ଧିଜୀ ତାଙ୍କ ଭାଷଣ ପ୍ରସଙ୍ଗରେ ଭାରତର ହିନ୍ଦୁ ମୁସଲମାନ ଏକତା ରକ୍ଷାକରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାପାଇଁ ଆହ୍ୱାନ ଦେଇଥିଲେ ଜନଗଣଙ୍କୁ । ଦେଶର ସ୍ୱରାଜ୍ୟ ପାଇଁ ବିଦେଶୀ ବସ୍ତ୍ରବର୍ଜନ କରିବା ସଙ୍ଗେ ସଙ୍ଗେ ଦେଶୀ ହାତବୁଣା ଖଦୀର ପ୍ରସାର କରି ଏବଂ ଅହିଂସା ଆଚରଣକୁ ନିଜର ବ୍ରତ କରି ଦେଶର ଅର୍ଥନୀତିକୁ ତାଣ କରିବା ସଙ୍ଗେସଙ୍ଗେ ବିଦେଶୀୟ ସରକାରକୁ ଆମଦେଶରୁ ଆପେ ଆପେ ହଟିଯିବା ପାଇଁ ରାସ୍ତା ପ୍ରସ୍ତୁତ କରିବା ଆବଶ୍ୟକ । ସେଇଠି

ଗୋପବନ୍ଧୁଙ୍କ ସମ୍ପର୍କରେ ସେ ଘୋଷଣା କରିଥିଲେ, "ଗୋପବନ୍ଧୁ ଏକ ମଣି । ଏଭଳି ତ୍ୟାଗୀ ଧର୍ମପ୍ରାଣ ବ୍ୟକ୍ତି ବିରଳ । ଉତ୍କଳ ତାଙ୍କୁ ପାଇ ଧନ୍ୟ । ତାଙ୍କ ନେତୃତ୍ୱରେ ସ୍ୱରାଜ୍ୟ ସଂଗ୍ରାମର ବିଜୟ ସୁନିଶ୍ଚିତ ।" (୧)

ତା ପରଦିନ ମଧ୍ୟ ଗାନ୍ଧିଜୀ କଟକରେ ଅବସ୍ଥାନ କରିବା ପରେ ୨୫ ତାରିଖ ଦିନ ଭଦ୍ରାଖ ଅଭିମୁଖେ ଯାତ୍ରା କରିଥିଲେ । ସାଥିରେ ଥିଲେ ପଣ୍ଡିତ ଗୋପବନ୍ଧୁ । ସେହିଦିନ ସେଠାରେ ଏକ ସାଧାରଣ ସଭାରେ ଭାଷଣ ଦେଇ ତା ପରଦିନ ସନ୍ଧ୍ୟାବେଳେ ପହଞ୍ଚିଥିଲେ ଏବଂ ମଧ୍ୟାହ୍ନରେ ସେଇଠି ଆୟୋଜିତ ସଭାରେ ଯୋଗ ଦେବାପରେ ପୁରୀ ଯାଇଥିଲେ । ପୁରୀର ଶରଧା ବାଲିଠାରେ ଏକ ସାଧାରଣ ସଭା ହୋଇଥିଲା ଏବଂ ସେଥିରେ ପ୍ରାୟ ଦଶ ହଜାର ଜନସମାଗମ ହୋଇଥିଲା । ପୁରୀର ରେଳଷ୍ଟେସନ୍‌ଠାରୁ ଆରମ୍ଭ କରି ସାରା ସହରରେ ଜନସମାଗମ ହୋଇଥିଲା ଏବଂ ମନେ ହୋଇଥିଲା ଯେମିତି ପୁରୀରେ ରଥଯାତ୍ରା ହେବାକୁ ଯାଉଛି । ସେ ଜନସମାଗମ ମୂଳରେ ଗାନ୍ଧିଜୀଙ୍କ ଅପେକ୍ଷା ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ପ୍ରଭାବ ବିଶେଷ ଥିବାର କାରଣ ଥିଲା ଯେତେବେଳେ ସେଇ ଗାନ୍ଧିଜୀ ତାଙ୍କର ଦ୍ୱିତୀୟ ଥର ଓଡ଼ିଶା ଗସ୍ତବେଳେ ସେଇ ପୁରୀରେ ସଭା କରିବା ପାଇଁ ଯାଇଥିଲେ ତାଙ୍କ ସହ ଗୋପବନ୍ଧୁଙ୍କ ନାମ ଯୋଡ଼ି ହୋଇ ନଥିବା ପ୍ରଚାର ହୋଇଥିବାରୁ ଅତି ନଗଣ୍ୟ ସଂଖ୍ୟାରେ ଶ୍ରୋତା ଯୋଗ ଦେଇଥିଲେ । ସେ ସଂପର୍କରେ ନିଜର ଅଭିଜ୍ଞତା ବର୍ଣ୍ଣନା କରି ପଣ୍ଡିତ ନୀଳକଣ୍ଠ ଲେଖିଛନ୍ତି—

"ପୁରୀରେ ଯେଉଁଠାରେ ନରେନ୍ଦ୍ର ଆଡ଼ୁ ରାସ୍ତା ବଡ଼ଦାଣ୍ଡରେ ମିଶିଛି ସେହିଠାରେ ସଭା ପାଇଁ ବ୍ୟବସ୍ଥା ହୋଇଥିଲା । କିନ୍ତୁ ଗୋପବନ୍ଧୁ ବାବୁଙ୍କୁ ନ ଡ଼ାକିବା ପ୍ରଚାର ହୋଇଯାଇଥିବାରୁ ସେଠାକୁ ଠିକ୍ ସମୟରେ (ଅର୍ଥାତ୍ ଅପରାହ୍ନ ୫ଟା ବେଳକୁ) କେହି ଆସିନଥିଲେ । ଗାନ୍ଧି ସେଠାରେ ଘଣ୍ଟାଏ ଅପେକ୍ଷା କଲେ । ଶେଷକୁ ଗୋପବନ୍ଧୁ ବାବୁ ଓ ଜଗବନ୍ଧୁ ବାବୁ ପ୍ରଭୃତି ସହରକୁ ଯାଇ ପରିଚିତ ଜଣ ସରିକି ପ୍ରଧାନ ପ୍ରଧାନ ଲୋକଙ୍କୁ ଡ଼ାକି

(୧) 'ସମାଜ' ବାର୍ଷିକ ସଂଖ୍ୟା—୧୯୬୯ ଜୁଲାଇ ୧୪, ପୃ ୪

ଆଣିଲେ । ମନେ ରଖିବାର ଅଛି ଏହି ଗାନ୍ଧୀ ୧୯୨୧ ରେ ଆସିଲାବେଳେ 'ଶରଧାବାଲି' ରେ ପୁରୀରେ ଅତ୍ୟନ୍ତ ଲୋକ ଗହଳ ହୋଇଥିଲା । ପୁରୀ ଜିଲ୍ଲାରୁ ସବୁଆଡ଼ୁ ଲୋକେ ଉପସ୍ଥିତ ଥିଲେ । ସେହି ସଭାରେ ନରେନ୍ଦ୍ରଠାରେ ମାତ୍ର ପଚିଶ ଜଣ ଲୋକଧରି ଗାନ୍ଧୀ ପ୍ରଥମେ ସଭା ଆରମ୍ଭ କଲେ । ସଭା ହେବାରୁ ପରେ କିଛି ଲୋକ କ୍ରମେ ଆସି ଉପସ୍ଥିତ ହେଲେ । କିନ୍ତୁ ସେ ସଂଖ୍ୟା ସେପରି କିଛି ଉଲ୍ଲେଖଯୋଗ୍ୟ ନୁହେଁ ।" (୨) ମହାତ୍ମାର, ରାଜାଙ୍କୁ ଭୂୟସୀ ପ୍ରଶଂସା କରି ଗାନ୍ଧିଜୀ ଲେଖିଥିବାରୁ ଗୋପବନ୍ଧୁଙ୍କୁ ତାହା ଭଲ ଲାଗିନଥିଲା ଏବଂ ଗାନ୍ଧିଜୀଙ୍କ ପ୍ରତି ବୀତସ୍ପୃହ ହୋଇ ଉଠିଥିବାର ତାହାହିଁ କାରଣ ଥିଲା ।

ସେହିଦିନର ଅନ୍ୟାନ୍ୟ ସ୍ଥାନଭଳି ପୁରୀ ଶରଧାବାଲିଠାରେ ଗୋପବନ୍ଧୁ ପ୍ରାଥମିକ ଭାଷଣ ଦେବାପରେ ଗାନ୍ଧିଜୀ ଭାଷଣ ଦେଇଥିଲେ । ପ୍ରାରମ୍ଭିକ ଭାଷଣ ପ୍ରସଙ୍ଗରେ ଗୋପବନ୍ଧୁ କହିଥିଲେ "ଏ ମହାତ୍ମାଙ୍କ ଶରୀର କ୍ଷୀଣ, ଆକାର କୃଶ । କିନ୍ତୁ ଏଥି ମଧ୍ୟରେ କି ଶକ୍ତି ନିହିତ ଅଛି ଯେ କେତେ ଦୂର ଦୂର ପଲ୍ଲୀ ଗ୍ରାମରୁ, ସହରରୁ ଏତେ ଲୋକଙ୍କୁ ଟାଣି ଆଣିଅଛି । ଏହି ଶକ୍ତି ଦକ୍ଷିଣ ଆଫ୍ରିକାରେ ଭାରତର ଜୟ ବୈଜୟନ୍ତୀ ଉଡ଼ାଇ ଥିଲା । ଏହି ଶକ୍ତି ବିହାର ପ୍ରଦେଶର ଚମ୍ପାରଣ ଜିଲ୍ଲାର ପ୍ରଜାଙ୍କୁ ନୀଳ ଚାଷ କରାଉଥିବା ସାହେବଙ୍କ ଅତ୍ୟାଚାରରୁ ରକ୍ଷା କରିଥିଲା । ଏହି ଶକ୍ତି କାଇରା ଜିଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ କରଜ୍ୱାଳାରୁ ମୁକ୍ତ କରିଥିଲା ।" ପୁରୀ ଦୁର୍ଭିକ୍ଷ ସମୟରେ ସରକାରୀ ନିଷ୍ଠୁରତା କଥା ଉଲ୍ଲେଖ କରି ସେ କହିଥିଲେ "ସରକାରୀ ଲାଟ୍ ତ ଏପରି କଲେ, କିନ୍ତୁ ଏହି ପୁରୀର ଠିକ୍ ପଶ୍ଚିମରେ ଦ୍ୱାରକା ଧାମରେ ଆମ୍ଭମାନଙ୍କ ହୃଦୟର ଲାଟ୍ ମହାତ୍ମାଗାନ୍ଧୀ ଗୁଜରାଟରେ ଥାଇ, ପୁରୀକୁ ନଦେଖି, ନଆସି ପୁରୀ ଜିଲ୍ଲାରେ ଦୁର୍ଭିକ୍ଷ ଘୋଷଣା କଲେ । ସେ ଘୋଷଣା ସଙ୍ଗେ ସଙ୍ଗେ ସହସ୍ର ସହସ୍ର କ୍ରୋଶ ଦୂରରୁ, କେବଳ ଗୁଜରାଟରୁ ନୁହେଁ, ସମଗ୍ର ଭାରତରୁ ରାଶି ରାଶି ଟଙ୍କା ଜମା ହେଲା ।

(୨) ନୀଳକଣ୍ଠ ଗ୍ରନ୍ଥାବଳୀ (୧୯୭୩) ପୃ ୯୪

ସରକାରଙ୍କ ଷ୍ଟୋକ ଦାନ ଏହା ତୁଳନାରେ କିଛି ନୁହେଁ ।"
ମହାତ୍ମାଗାନ୍ଧୀଙ୍କ ଓଡ଼ଶା ଆଗମନରେ କାରଣ—କେବଳ ଅସହଯୋଗ ଆନ୍ଦୋଳନର ପ୍ରଚାର ବୋଲି କହିବା ସଙ୍ଗେ ସଙ୍ଗେ ଅସହଯୋଗ କ'ଣ ତାହା ମଧ୍ୟ ସରଳ ଓ ସୁନ୍ଦର ଭାବରେ ବୁଝାଇ ଦେଇଥିଲେ । ସେହି ଭାଷଣ ପ୍ରସଙ୍ଗରେ ଏହା ମଧ୍ୟ କହିଥିଲେ ଯେ "ବ୍ରିଟିସ୍ ଦ୍ରବ୍ୟ ଓ ବ୍ରିଟିସ୍ ଶାସନ ସମ୍ପର୍କ ତ୍ୟାଗ କଥାକୁ ଭାରତ ଜାତୀୟ ମହାସମିତି ଗୋଟିଏ ଶବ୍ଦରେ ଗ୍ରହଣ କରିଛନ୍ତି ।" (୩)

ତା ପରେ ଗାନ୍ଧିଜୀ ତାହାଙ୍କ ଅଭିଭାଷଣ ଦେଇଥିଲେ । ସେଦିନ ତାହାଙ୍କ ଭାଷଣର ମୁଖ୍ୟଅଂଶ ଥିଲା ଓଡ଼ିଶାର ଦାରିଦ୍ର୍ୟ । ସାକ୍ଷୀଗୋପାଳ ଓ ପୁରୀଠାରେ ସମବେତ ଜନତାଙ୍କୁ ଦେଖି ତଥା ଓଡ଼ିଶାର ଅନ୍ୟାନ୍ୟ ସ୍ଥାନ ପରିଦର୍ଶନ ପରେ ନିଜ ଅଭିଜ୍ଞତାରୁ ସେ ଅନୁଭବ କରିପାରିଥିଲେ ଓଡ଼ିଶାର ଯଥାର୍ଥ ଅର୍ଥନୈତିକ ଦୁରବସ୍ଥା ।

ଗାନ୍ଧିଜୀଙ୍କର ପ୍ରଥମ ଓଡ଼ିଶା ଗସ୍ତ ତାହାଙ୍କ ଜୀବନରେ ବିଶେଷ ପ୍ରଭାବ ପକାଇଥିଲା । ସେ ଲେଖିଥିଲେ 'ଜଗନ୍ନାଥଙ୍କ ନୀଳଚକ୍ର ଆଡ଼ୁଆଳରେ ମୁଁ ଯେଉଁ ସମସ୍ତ ଅସ୍ଥିକଙ୍କାଳ ସାର ପୁରୁଷ, ସ୍ତ୍ରୀ ଓ ଶିଶୁ ଦେଖିଲି, ସେମାନଙ୍କ ଚିତ୍ର ମୋ ମନରେ ସର୍ବଦା ଲାଗି ରହିଛି । ...ଓଡ଼ିଶାର ଅବସ୍ଥା ଦେଖିଲେ ଯେ କେହି ଏହା ସ୍ୱୀକାର କରିବେ ଯେ ଅଙ୍ଗରେ ବିଦେଶୀ ଲୁଗା ପିନ୍ଧିବା ମଧ୍ୟ ପାପ । ଏଭଳି କରିବାଟା ଭାରତ ପ୍ରତି ଓ ସମଗ୍ର ମାନବ ସମାଜ ପ୍ରତି ଆମର ଏକ ଅପରାଧ । ଭାରତର ନୂତନ ଜାଗରଣରେ ମୋର ବିଶ୍ୱାସ ଅଛି । ତାହା ନହେଲେ ଏ ଅବସ୍ଥା ଦେଖି ମୁଁ ଅନାହାରରେ ଆତ୍ମହତ୍ୟା କରନ୍ତି ।" (୪) ଏବଂ ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ଥିଲା ଓଡ଼ିଶା ଲୋକଙ୍କ ଦାରିଦ୍ର୍ୟ ପ୍ରତିଫଳିତ ପୋଷାକ ଗାନ୍ଧିଜୀଙ୍କ ପୋଷାକକୁ ପରିବର୍ତ୍ତନ କରାଇ ଦେଇଥିଲା । ସେ

---

(୩,୪) ଉତ୍କଳମଣି ଗୋପବନ୍ଧୁ—ଶ୍ରୀ ବିନୋଦ କାନୁନ୍‌ଗୋ, ପୃ ୯୦-୯୧

ସ୍ଥିର କରିଥିଲେ ସେଦ୍ଦିନଠାରୁ ଆଣ୍ଠୁ ଲୁଚିବା ଭଳି ପୋଷାକ ସେ ଆଉ ପିନ୍ଧିବେ ନାହିଁ ।

ଏବଂ ଅପର ପକ୍ଷରେ ଗାନ୍ଧିଜୀଙ୍କ ଓଡ଼ିଶା ଗସ୍ତ ହମର ପ୍ରଭାବ ମଧ୍ୟ ପ୍ରଭୂତ ଭାବରେ ପ୍ରତିଫଳିତ ହୋଇଥିଲା କଂଗ୍ରେସ କର୍ମୀମାନଙ୍କ ଉପରେ । ଗୋପବନ୍ଧୁଙ୍କ ଉଦ୍ୟମରେ ସଂଗଠିତ ଭାବରେ ସମସ୍ତେ ଉଦ୍ୟମ କରିଥିଲେ ଅସହଯୋଗର ବାର୍ତ୍ତା ଓଡ଼ିଶାର ଗ୍ରାମେ ଗ୍ରାମେ ପହଞ୍ଚାଇବା ଲାଗି ।

ବାସ୍ତବିକ୍ ଓଡ଼ିଶାରେ କଂଗ୍ରେସର ଓ ସ୍ୱରାଜ୍ୟର ବାର୍ତ୍ତା ପ୍ରଚାର କରିବାରେ ଗୋପବନ୍ଧୁ ଥିଲେ ଭଗୀରଥ ।



॥ ନଅ ॥

# ଏ ଦେଶର ନେତା ନିଜେ ନାରାୟଣ

ଗୋପବନ୍ଧୁଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା ସମ୍ବାଦପତ୍ର "ସମାଜ"ରେ କଂଗ୍ରେସର ବାର୍ତ୍ତା ପ୍ରଚାର ହେବା ସଙ୍ଗେ ସଙ୍ଗେ ବିଭିନ୍ନ ଆଂଚଳିକ ସମ୍ବାଦ ତଥା ଇଂରେଜ ସରକାରଙ୍କ ଅନ୍ୟାୟ ଓ ଅତ୍ୟାଚାରର ସମ୍ବାଦ ବିଶେଷ ଭାବରେ ପ୍ରକାଶ ପାଉଥିଲା । ପୁରୀ ଜିଲ୍ଲାର ବେଗୁନିଆଁ ଥାନାର ପୋଲିସ୍ କର୍ମଚାରୀମାନଙ୍କ ବିରୁଦ୍ଧରେ ସେତେବେଳେ ଯେଉଁ ଲେଖା ସମାଜରେ ପ୍ରକାଶ ପାଇଥିଲା ତାହା ସମଗ୍ର ଓଡ଼ିଶାରେ ଚହଳ ପକାଇବା ସଙ୍ଗେ ସଙ୍ଗେ ଇଂରେଜ ସରକାରୀ ଅଫିସରଙ୍କ ମହଲରେ ମଧ୍ୟ ଏକପ୍ରକାର ଆନ୍ଦୋଳନ ସୃଷ୍ଟି କରିଥିଲା ଏବଂ ଆତଙ୍କ ମଧ୍ୟ ।

ତାହାଥିଲା ଗାନ୍ଧିଜୀ ପ୍ରଥମଥର ପାଇଁ ଓଡ଼ିଶା ପରିଦର୍ଶନ କରି ଫେରିବା ପରର ଏକ ଘଟଣା । ସମ୍ବାଦଟିର ଶିରୋନାମାଥିଲା 'ସତ୍ୟ ହୋଇଥିଲେ ସାଂଘାତିକ ।'

ପୁରୀ ଜିଲ୍ଲାର ବେଗୁନିଆଁ ଥାନାର ପୋଲିସ୍ କର୍ମଚାରୀମାନେ ଜନସାଧାରଣଙ୍କ ଉପରେ ଅଯଥା ଅତ୍ୟାଚାର ତଥା ଦୁଇଜଣ କର୍ମଚାରୀ କୌଣସି ଏକ ନାରୀ ଉପରେ ପାଶବିକ ଅତ୍ୟାଚାର କରିଥିବାର ଅଭିଯୋଗ ଗୋପବନ୍ଧୁଙ୍କ ନିକଟରେ ପହଞ୍ଚିଲା । ସେ ଉକ୍ତ ଅତ୍ୟାଚାରର ସମ୍ବାଦ ପ୍ରକାଶ କରିଥିଲେ ୧୯୨୧ ମସିହା ଅଗଷ୍ଟ ୧୩ ତାରିଖରେ ସମାଜରେ । କିନ୍ତୁ ପରେ ଅନୁସନ୍ଧାନରୁ ଜାଣିପାରିଥିଲେ ଯେ ସମ୍ବାଦଦାତା ଜଣକ ସମ୍ବାଦଟିକୁ ଅତିରଂଜିତ କରି ପଠାଇଥିଲେ । ତେଣୁ ସେହି ମାସ ୨୪ ତାରିଖ ଦିନ ସେ ପୂର୍ବପ୍ରକାଶିତ ସମ୍ବାଦଟିର ସଂଶୋଧନ ପୁଣି ପ୍ରକାଶ କରିଦେଇଥିଲେ ।

ସେତେବେଳକୁ ଇଂରେଜ ସରକାରଙ୍କ ବିଷଦୃଷ୍ଟି ର ପରିସୀମା ଭିତରକୁ ଆସି ଯାଇଥିଲେ ଗୋପବନ୍ଧୁ । ତାର କାରଣ ଥିଲା ଗୋପବନ୍ଧୁ ଓଡ଼ିଶାର ଜାତୀୟ କଂଗ୍ରେସ ଶାଖାର କେବଳ ସଭାପତି ନଥିଲେ; ଥିଲେ ଅବହେଳିତ ଜନତାର ପ୍ରକୃତ ବନ୍ଧୁ । ତେଣୁ ଇଂରେଜ ସରକାର ମନେ କରିଥିଲେ ପ୍ରକୃତରେ ଓଡ଼ିଶାର ନେତାଥିଲେ ଗୋପବନ୍ଧୁ ଓ ତାହାଙ୍କୁ କବଳିତ କରାଯାଇପାରିଲେ ଓଡ଼ିଶାରେ ଆୟୋଜିତ ଆନ୍ଦୋଳନର ନାଆଁ ଲୁପ୍ତ ହେବ ।

ସେଇଠି ଇଂରେଜ ସରକାରଙ୍କ ଚିନ୍ତା ବିଭ୍ରାନ୍ତ ହୋଇଯାଇଥିଲା । ଗୋପବନ୍ଧୁ ଓଡ଼ିଶା ଜନଗଣଙ୍କର ନେତାଥିଲେ ସତ୍ୟ କିନ୍ତୁ ତାହାଙ୍କର ନେତାଥିଲେ ସ୍ୱୟଂ ନାରାୟଣ । ତେଣୁ ସେଇଠି ଅନ୍ୟାୟ ଅଙ୍ଗୀକାର ପ୍ରଶ୍ନ ନଥିଲା, ପ୍ରଶ୍ନ ନଥିଲା କୂଟନୀତିର ବା ଦ୍ୱୈତବାଦର । ଗୋପବନ୍ଧୁ ପ୍ରକାଶ୍ୟରେ ଯାହା କହୁଥିଲେ, ପ୍ରତ୍ୟକ୍ଷରେ ତାହା କରୁଥିଲେ ।

କିନ୍ତୁ ଏକଥା ସତ୍ୟ ଯେ, ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଅସହଯୋଗ ଆନ୍ଦୋଳନ ତଥା ଭାରତୀୟ ଜାତୀୟ କଂଗ୍ରେସକୁ ଓଡ଼ିଶାକୁ ବହନ କରି ଆଣିବାରେ ସେଥିରେ ଭଗୀରଥ । ପୁଣି ସମାଜ ପ୍ରକାଶନ କରି ସରକାରୀ କାର୍ଯ୍ୟକଳାପଗୁଡ଼ିକର ତୀବ୍ର ବିରୋଧ କରିବା ସଙ୍ଗେ ସଙ୍ଗେ ସରକାରଙ୍କ ସମସ୍ତ ଦୋଷ ଦୁର୍ବଳତା ଜନମାନସ ସମ୍ମୁଖରେ ଉପସ୍ଥାପିତ କରାଇ ଦେଉଥିଲେ । ତେଣୁ ଇଂରେଜ ସରକାରଙ୍କ କୋପଦୃଷ୍ଟି ଗୋପବନ୍ଧୁଙ୍କ ଉପରେ ପଡ଼ିବା ସ୍ୱାଭାବିକ କଥା । ସେ ଦୃଷ୍ଟିରୁ ତାଙ୍କ ରାଜନୈତିକ ଜୀବନରେ ସେ ସମ୍ବାଦ ପରିବେଷଣ ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେହିଠାରୁ ହିଁ ତାଙ୍କ ଉପରେ ଇଂରେଜ ସରକାରଙ୍କ ଅତ୍ୟାଚାରର ଘନଘଟା ଆରମ୍ଭ ହୋଇଥିଲା ।

ସେ ସମ୍ବାଦ ପ୍ରକାଶ ପରଠାରୁ ସେ ଯେଉଁ ଆଡ଼କୁ ସଭାସମିତି କରିବା ଉଦ୍ଦେଶ୍ୟରେ ଯାଉଥିଲେ ପ୍ରାୟ ସବୁଠି ସରକାରଙ୍କ ତରଫରୁ ୧୪୪ ଧାରା ଜାରି କରାଯାଉଥିଲା । ବିଭିନ୍ନ ଅଭିଯୋଗ ତାହାଙ୍କ ବିରୁଦ୍ଧରେ

ଅଣା ଯାଉଥିଲା । ଭାରତରେ ସରକାରଙ୍କ ଆଇନ ଅମାନ୍ୟ କରିବା ପାଇଁ କଂଗ୍ରେସ ସେତେବେଳେ ଯାଏଁ କୌଣସି ନିଷ୍ପତ୍ତି ନେଇ ନଥିଲା । ତେଣୁ ଆଇନକୁ ଅମାନ୍ୟ କରି ଅନେକ ସ୍ଥାନରେ ଗୋପବନ୍ଧୁ ଭାଷଣ ଦେଇ ପାରୁନଥିଲେ । ବାଧାହୋଇ ଫେରି ଆସୁଥିଲେ । ପୁଣି ଆଇନ ଅମାନ୍ୟ ନକଲେ ଗୋପବନ୍ଧୁଙ୍କୁ ଗିରଫ କରିବାର ଇଂରେଜ ଶାସକମାନେ ସାହସ କରିପାରୁ ନଥିଲେ । ଆଇନ ଖିଲାପ୍ ନକଲେ ବିନା ଦୋଷରେ ଦଣ୍ଡ ଦେଇ ହୁଏନାହିଁ । ତେଣୁ କୌଣସି ନା କୌଣସି ଦୋଷ ତାହାଙ୍କ ଉପରେ ଲଦି ଦେବାପାଇଁ ସୁଯୋଗ ଖୋଜୁଥିଲେ । ଏକ ଅପୂର୍ବ ସୁଯୋଗ ସେମାନେ ହାତ ପାହାନ୍ତାରେ ପାଇଥିଲେ । ସେମାନେ ମନେ କରୁଥିଲେ ତତ୍କାଳୀନ ଉତ୍କଳର ଏକମାତ୍ର ଜନପ୍ରିୟ ନେତାଙ୍କୁ ଗିରଫ କରାଯାଇପାରିଲେ ଏହି ଭୂଖଣ୍ଡର ଅବସ୍ଥା ଶାନ୍ତ ହୋଇଯିବ । କିନ୍ତୁ ସେମାନେ ବିବେଚନା କରିପାରୁ ନଥିଲେ ଯେ ଉତ୍କଳର ଜଣେ ନୁହନ୍ତି— ଜଣେ ଏବଂ ସେହି ନେତାମାନଙ୍କର ନେତା ଖୋଦ୍ ଜଗନ୍ନାଥ । ଖୋଦ୍ ବହୁରୂପୀ ନାରାୟଣହିଁ ଏ ଦେଶର ନେତା ହୋଇପାରନ୍ତି ।

ଏକ ମିଥ୍ୟା ସମ୍ବାଦ ଖବରକାଗଜରେ ପ୍ରକାଶ ପାଇବା ଫଳରେ ମାନହାନି ହେଲାବୋଲି ସରକାର ଅଭିଯୋଗ କରିବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ଅଭିଯୋଗ ହେଲା ଯେ ସେ ଶାନ୍ତି ସେନା ଗଠନ କରିଥିଲେ । କପଟ ଭାବରେ ଆଇନକୁ ବ୍ୟବହାର କଲେ ଗୋପବନ୍ଧୁଙ୍କ ବିରୁଦ୍ଧରେ ଅଭିଯୋଗ ପ୍ରମାଣିତ ହେବ ଓ ସେ ନିଶ୍ଚିତ ଭାବେ ଜେଲ୍ ହାଜତକୁ ଯିବେ, ସେ ନେଇ ବିହାର ଓଡ଼ିଶା ବିଭାଗର ପ୍ରଧାନ ସଚିବ, ପୋଲିସ ମୁଖ୍ୟ ଓ ଆଇନ ବିଭାଗର ସର୍ବୋଚ୍ଚ କର୍ତ୍ତାଙ୍କ ମଧ୍ୟରେ ଚିନ୍ତାଧନା ଆଲୋଚନା ହୋଇଥିଲା ।

ସେଦିନ ଗୋପବନ୍ଧୁ ଥିଲେ ପୁରୀରେ । ଖୋର୍ଦ୍ଧା ମାଜିଷ୍ଟ୍ରେଟ୍‌ଙ୍କ ସମନ ଜଣେ ପୋଲିସ୍ ନେଇ ଆସିଥିଲା ପ୍ରାୟ ଦଶ ଘଣ୍ଟାବେଳେ । ସେଥିରେ ତଲବ୍ କରାଯାଇଥିଲା ଖୋର୍ଦ୍ଧା ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ ହାଜର ହେବା ପାଇଁ । ଗୋପବନ୍ଧୁ ଖୋର୍ଦ୍ଧା ଯାଇଥିଲେ ଏବଂ ତାଙ୍କ

ତରଫରୁ 'ଉତ୍କଳ ଭାରତ ପୂର୍ବରୁ ଜଗବନ୍ଧୁ ସିଂହ ଓ ଉପେନ୍ଦ୍ର କର ମଧ୍ୟ ତାଙ୍କ ସହ ଯାଇଥିଲେ ।

ମାଜିଷ୍ଟ୍ରେଟ୍ ଥିଲେ ସୁରେଶଚନ୍ଦ୍ର ବୋଷ—ଭାରତର ଜଣେ ବିଖ୍ୟାତ କ୍ରାନ୍ତିକାରୀ ନେତା ସୁଭାଷଚନ୍ଦ୍ର ବୋଷଙ୍କ ବଡ଼ଭାଇ । ଆସାମୀ ଗୋପବନ୍ଧୁ ଯେତେବେଳେ କୋର୍ଟରେ ହାଜର ହୋଇଥିଲେ, ମାଜିଷ୍ଟ୍ରେଟ୍ କେସ୍ ବିଚାର ପାଇଁ ଏକ ତାରିଖ ନିର୍ଦ୍ଧାର୍ଯ୍ୟ କରି ଜାମିନ୍‌ନାମାରେ ଦସ୍ତଖତ କରାଇ ଛାଡ଼ିଦିବାପାଇଁ ଆଦେଶ ଦେଇଥିଲେ । କିନ୍ତୁ ଗୋପବନ୍ଧୁ ଜାମିନ୍ ଦେଇ ଛାଡ଼ିଦିବାଲାଗି ଆଦୌ ପ୍ରସ୍ତୁତ ନଥିଲେ, ଯଦିଓ ଉଭୟ ଉତ୍କଳ ସେଥିପାଇଁ ଆଗଭର ହୋଇ ପଡ଼ିଥିଲେ । ଗୋପବନ୍ଧୁଙ୍କ ଜିଦ୍ ସେ ଜେଲ୍ ହାଜତରେ ରହିବେ, କିନ୍ତୁ ଜାମିନ୍‌ରେ ଯିବେ ନାହିଁ । ତାଙ୍କର ଉତ୍କଳ ଦୁଇଜଣ ତଥା ଉପସ୍ଥିତ ଅନ୍ୟମାନେ ଯେତେ ବୁଝାଇଲେ ମଧ୍ୟ ସେ କୌଣସିମତେ ରାଜି ହୋଇ ନଥିଲେ । ସେ ତାଙ୍କ ଅଟଳ ନିଷ୍ପତ୍ତି ହାକିମଙ୍କୁ ଜଣାଇ ଦେଇଥିଲେ ଯେ ସେ ଜେଲ୍ ହାଜତକୁ ଯିବାକୁ ଚାହାନ୍ତି—ଜାମିନ୍‌ରେ ଯିବାପାଇଁ ଆଦୌ ପ୍ରସ୍ତୁତ ନୁହନ୍ତି ।

ସଂଧ୍ୟାରେ ତାଙ୍କୁ ଖୋର୍ଦ୍ଧା ଜେଲ୍ ହାଜତକୁ ନିଆ ଯାଇଥିଲା । ସେଥିରେ ସେ ଖୁବ୍ ଖୁସି ହୋଇଥିଲେ । କିନ୍ତୁ ତାଙ୍କ ଅନୁଚରମାନଙ୍କ ଆଖିରୁ ଲୁହର ଧାର ବନ୍ୟା ହୋଇ ବହିଥିଲା । ସେଇ ଖୋର୍ଦ୍ଧା ଜେଲ୍‌ରେ ତାହାଙ୍କୁ ଚଉଦ ଦିନ ରଖାଯାଇଥିଲା । ଜେଲ୍ ଭିତରେ ଥିବାବେଳେ ମଧ୍ୟ ସେ ସମାଜ ଲାଗି ଲେଖାଲେଖି କରୁଥିଲେ ଏବଂ ଯେତେବେଳେ ତାଙ୍କ ବିଶ୍ୱସ୍ତ ଅନୁଚର ରାମା ତାଙ୍କଲାଗି ଖାଦ୍ୟନେଇ ଯାଉଥିଲା, ତାର ହାତରେ ସବୁଲେଖା ପଠାଇ ଦେଉଥିଲେ ।

ମକଦ୍ଦମାର ବିଚାର ଦିନଗୁଡ଼ିକରେ ତାହାଙ୍କୁ ଜେଲ୍‌ରୁ କୋର୍ଟ ହାଜତକୁ ଅଣାଯାଉଥିଲା ଏବଂ ସେହିଦିନମାନଙ୍କରେ ବନ୍ଦୀ ଗୋପବନ୍ଧୁଙ୍କୁ ଦେଖିବା ଲାଗି ତଥା ତାଙ୍କ ଅପରାଧଗୁଡ଼ିକର ବିଚାର ଶୁଣିବା ଲାଗି ଲୋକ ଭିଡ଼ କ୍ରମେ କ୍ରମେ ଅଧିକରୁ ଅଧିକତର ହେଉଥିଲା । ତାହାଥିଲା ଓଡ଼ିଶାରେ

ଅସହଯୋଗ ଆନ୍ଦୋଳନର ପ୍ରଥମ ରାଜନୈତିକ ବନ୍ଦୀର । ଜେଲ୍ ହାଜତରୁ କଟେଶ୍ୱ ପର୍ଯ୍ୟନ୍ତ ଲୋକେ ସଂକୀର୍ତ୍ତନ କରି ବନ୍ଦୀ ଗୋପବନ୍ଧୁଙ୍କୁ ଆଣୁଥିଲେ ଓ ପୁଣି ସଂଧ୍ୟାବେଳେ ସେହିଭଳି ନେଇ ଛାଡ଼ି ଆସୁଥିଲେ ମଧ୍ୟ । ଗୋପବନ୍ଧୁଙ୍କ କେସ୍ ବିଗ୍ଭର ଥିବା ଦିନଗୁଡ଼ିକରେ କଟେଶ୍ୱ ହତା ଗ୍ରାପ୍ଣ ଖୋଳ କରତାଳ ବାଜା ସଂକୀର୍ତ୍ତନରେ ଫାଟି ପଡ଼ୁଥିଲା ।

ପଣ୍ଡିତ ଗୋପବନ୍ଧୁ ସେତେବେଳକୁ ଓଡ଼ିଶାର ପୁରପଲ୍ଲୀରେ ଅତ୍ୟନ୍ତ ପ୍ରିୟ ହୋଇ ଉଠିଥିଲେ । ବିଗ୍ଭରର ଶେଷଦିନ—ଯେଉଁ ଦିନ ମକଦ୍ଦମାର ରାୟ ଦିଆଯିବ ସେ ଦିନ କଟେଶ୍ୱ ସାମନାରେ ଥିଲା ବିରାଟ ଜନ ସମୁଦ୍ର । ସେ ସମୁଦ୍ରରେ ଉଦ୍‌ବେଳନ ନଥିଲା ଶାନ୍ତ, ଧୀର । ତଥାପି ସରକାର ଆତଙ୍କିତ ହୋଇ ପଡ଼ିଥିଲେ । ସରକାର ସ୍ଥିର କରିଥିଲେ କଟେଶ୍ୱ ଘର ସାମନାରେ ଥିବା ଏକ ବିରାଟ ଓସ୍ତ ଗଛ ମୂଳେ ସେ ଦିନ କୋର୍ଟ କାମ ହେବ, କଟେଶ୍ୱ ଘର ଭିତରେ ହେବ ନାହିଁ ।

ସେ ଦିନ ସକାଳୁ ସକାଳୁ ଖୋର୍ଦ୍ଧା ଏସ୍. ଡ଼ି. ଓ. ଶ୍ରୀ ଅଜୟଚନ୍ଦ୍ର ଦାସ ପ୍ରଥମେ ସବ୍‌ଜେଲ୍‌କୁ ଯାଇଥିଲେ ଅଳ୍ପ ସମୟ ପାଇଁ । ତା ପରେ ସେଠାରୁ ସିଧା ଲେଉଟି ଆସିଥିଲେ ମାଜିଷ୍ଟ୍ରେଟ୍ ସୁରେଶ୍ ବାବୁଙ୍କ ବଙ୍ଗଳାକୁ । ସେଠାରେ ସେ ନିଜର କାତରତା ପ୍ରକାଶ କରିଥିଲେ "କାଲି ସଂଧ୍ୟାବେଳୁ ଖୋର୍ଦ୍ଧାକୁ ଲୋକଙ୍କ ସୁଅ ଛୁଟିଲାଣି । ଏସ୍. ପି. ମତେ ଜବାବ୍ ଦେଇଛନ୍ତି ଯେ ଦଳେ ସଶସ୍ତ୍ର ପୋଲିସ୍‌ଙ୍କୁ ସାଙ୍ଗରେ ଧରି ଆସିବେ । ସକାଳୁ ଲୋକେ ଆସିବାକୁ ଆରମ୍ଭ କଲେଣି । ବର୍ତ୍ତମାନ ସୁଦ୍ଧା ୧୦ ହଜାର ହୋଇଗଲାଣି । ......ରାସ୍ତାରେ ଲୋକଙ୍କ ସୋ୍ରତ । ବାରଟା ବେଳକୁ ୨୫ ହଜାର ହୋଇଯାଇପାରେ...ଦଣ୍ଡ ଖବର ଶୁଣିଦେଲା ମାତ୍ରେ ଗୋଳମାଳ ଲାଗିଯାଇ ପାରେ । ଶାସ୍ତି ହୋଇଗଲା ପରେ ଲୋକଙ୍କୁ ସମ୍ଭାଳ ହେବ ନାହିଁ । ମୋର ତ ଆଶଙ୍କା ହେଉଛି ଯେ ସବୁ ସରକାରୀ କୋଠାବାଡ଼ିରେ ନିଆଁ ଲାଗିବ । ଟ୍ରେଜେରୀ ଲୁଟ୍ ହୋଇଯିବ । ଆମକୁ ହୁଏତ ମାରିଦେବେ ।"

ଖୋର୍ଦ୍ଧା ଏସ୍. ଡ଼ି. ଓ. ରାୟ ସାହେବ ନିଶ୍ଚିନ୍ତ ଥିଲେ ଯେ ଏଇଥର ଗୋପବନ୍ଧୁ କଠୋର ଦଣ୍ଡରେ ଦଣ୍ଡିତ ହେବେ । କାରଣ

ସେଇଥିପାଇଁ ପୁଣରେ ଏସ୍. ପି. ମିଷ୍ଟର ପାଇସ୍ କେବଳ ଅତ୍ୟନ୍ତ ବ୍ୟଗ୍ର ନଥିଲେ ଥିଲେ ମଧ୍ୟ ଶଙ୍କିତ ଓ ଆଇନ ପରାମର୍ଶଦାତା । ସେ ଏପରିଭାବରେ ଆଇନଗତ ପରାମର୍ଶ ଦେଇଥିଲେ ଯେ ସମସ୍ତେ ମନେ-କରିଥିଲେ ଗୋପବନ୍ଧୁ ଶତଚେଷ୍ଟା କରି ଆଉ ଖସି ପାରିବେ ନାହିଁ । କେବଳ ସେଇ ବ୍ୟବହାରଣା ଦେଖିବାଲାଗି ପ୍ରତିଦିନ ଗାଇସ୍ ସାହେବ ଆସୁଥିଲେ ପୁରୀରୁ ଖୋର୍ଦ୍ଧା । ପୁଣି କେସ୍‌ର ଏଭଳି ମତିଗତି ଦେଖି ଗୋପବନ୍ଧୁ ନିଜେ ମଧ୍ୟ ଭାବୁଥିଲେ ଯେ ନିଶ୍ଚିତଭାବେ ତାହାଙ୍କୁ କାରାରୁଦ୍ଧ କରାଯାଉଛି । ଯଦିଓ ସେତେବେଳକୁ ସୁରେଶ୍ ବାବୁ କ ରାୟ ଦେବେ ସ୍ଥିର କରିସାରିଥିଲେ, ସାର ସାମାନ୍ୟତମ ସୂଚନା ମଧ୍ୟ ଦେଇ ନଥିଲେ ଅଜୟ ବାବୁଙ୍କୁ ।

ସବୁବେଳେ ଖୁବ୍ ଶୀଘ୍ର କଚେରୀକୁ ଯାଉଥିବା ମାଜିଷ୍ଟ୍ରେଟ୍ ସୁରେଶ ବାବୁ ସେ ଦିନ କିନ୍ତୁ ଡେରିରେ ଯାଇଥିଲେ । ସେଦିନର ଦୃଶ୍ୟ ତାହାଙ୍କୁ ବିସ୍ମିତ କରାଇ ଦେଇଥିଲା "ସେ କି ଦୃଶ୍ୟ ! ପଚିଶ ହଜାର ଲୋକ ଜମା ହୋଇ ଗଲେଣି । ମଫସଲ ଅଞ୍ଚଳରୁ, ଗଡ଼ଜାତ ଇଲାକାରୁ ଶଗଡ଼ ଗାଡ଼ି କରି କେତେ ଲୋକ ଆସିଥାନ୍ତି । ଅନୁମାନ କଲି ଯେ ପାଞ୍ଚଶହରୁ କମ୍ ବଳଦ ଗାଡ଼ି ନୁହେଁ ।"

ଅନ୍ୟାନ୍ୟ କାମ ଶେଷ କରିବାପରେ ଅପରାହ୍ଣ ଗୁଟାଏ ବେଳକୁ ମୁଦାଲିଙ୍କୁ ସବ୍‌ଜେଲ୍‌ରୁ କୋର୍ଟକୁ ଆଣିବାକୁ କୋର୍ଟ ସବ୍‌ଇନସ୍‌ପେକ୍‌ଟରଙ୍କୁ ଆଦେଶ ଦେଇଥିଲେ ସେ । ସ୍ଥିର କରିଥିଲେ ଠିକ୍ ଚାରିଟା ତିରିଶ ମିନିଟ୍‌ରେ ସେ ରାୟ ଶୁଣାଇବେ । ରାସ୍ତାରେ ଆସିଲାବେଳେ ଜନସମୁଦ୍ରକୁ ଉଦ୍‌ବୋଧନ ଉଦ୍ଦେଶ୍ୟରେ ଗୋପବନ୍ଧୁ ଚେଷ୍ଟା କରିଥିଲେ । ସେଇ ଅବସରରେ ସେ ବୁଝାଇ ଦେଇଥିଲେ ଯେ କେହି ଯେପରି କଂଗ୍ରେସର ମୂଳ ମତ ବିରୁଦ୍ଧକରି ହିଂସା ଆଚରଣ କରିବେ ନାହିଁ ।

ପୁଲିସମାନଙ୍କୁ ତିନି ଉଜନରେ ବେଳ ତାଙ୍କର ଭାଗ୍ୟ ପଡ଼ୁଥିଲା ଯେମିତି । ସରକାର ମକଦ୍ଦମା କରିଥିଲେ ଗୋପବନ୍ଧୁଙ୍କ ବିରୁଦ୍ଧରେ । ସରକାରୀ କର୍ମଚାରୀମାନଙ୍କ ଇଜ୍ଜତ ହାନି କରିବା ପାଇଁ ଗୋପବନ୍ଧୁ ଉଦ୍ୟମ

କରିଥିବାରୁ ସେ ଆଜି ଦଣ୍ଡିତ ହେବେ ନିଶ୍ଚୟ । ସେଥିପାଇଁ ସମଗ୍ର ସରକାରୀ କଳ ସକ୍ରିୟ । ଖୋଦ୍ ମାଜିଷ୍ଟ୍ରେଟ୍‌ଙ୍କ ଭାଷାରେ "ଏହି ମକଦ୍ଦମାକୁ ମଜବୁତ୍ କରିବା ପାଇଁ ସରକାରୀ ସାକ୍ଷୀରୂପେ ଆସିଥିଲେ ପୋଲିସ୍ ଏସ୍. ପି., ଏସ୍. ଡି. ଓ., କେତେଜଣ ପୋଲିସ୍ ଅଫିସର, ଅନ୍ୟ ସବୁ ସିପାହୀ ଓ କେତେଜଣ ଗ୍ରାମବାସୀ । ସେମାନେ ସମସ୍ତେ କହୁଥାନ୍ତି ଯେ ପୋଲିସ୍‌କୁ ଗାଁ ଲୋକେ ଆଗରୁ ଘୃଣା କରୁଥିଲେ । ଏହି ମାନହାନିସୂଚକ ସମ୍ବାଦ ସମାଜରେ ପ୍ରକାଶ ପାଇଯିବାରୁ ପୋଲିସ୍ ଜନସାଧାରଣଙ୍କ ଦୃଷ୍ଟିରେ ଅତି ହୀନ ବୋଲି ପ୍ରମାଣିତ ହୋଇଗଲା ।"

ସେମାନଙ୍କ ପଥ ପ୍ରଦର୍ଶକ ସରକାରୀ ଆଇନ ପରାମର୍ଶଦାତାଙ୍କ ପରାମର୍ଶକ୍ରମେ ଉଚ୍ଚ ସରକାରୀ ଅଫିସରମାନଙ୍କ ବିବେଚନାକୁ ଠିକ୍ ନୁହେଁ ବୋଲି ପ୍ରମାଣିତ କରିବା ପାଇଁ ଆଇନକୁ ବ୍ୟବହାର କରିଥିଲେ ତଥାକଥିତ ଯୁବକ ଅନଭିଜ୍ଞ ମାଜିଷ୍ଟ୍ରେଟ୍ ସୁରେଶ ବୋଷ । ଆଇନ ପରାମର୍ଶଦାତାଙ୍କ ପରାମର୍ଶ ଅନୁଯାୟୀ ବେଗୁନିଆଁ ଥାନାର ସମସ୍ତ କନେଷ୍ଟବଲ୍ ମାନହାନି ମକଦ୍ଦମା ଦାଏର କରିଥିଲେ । କେଉଁମାନଙ୍କ ମାନହାନି ହୋଇଛି ତାହା ନିର୍ଦ୍ଦିଷ୍ଟ ଭାବରେ ପ୍ରମାଣିତ କରିବା ପାଇଁ ଯେଉଁ ଅସୁବିଧା ସରକାରୀ ସ୍ତରରେ ହେଉଥିଲା ତାହା କେବଳ ଦୂର କରିବା ଲାଗି ମାଜିଷ୍ଟ୍ରେଟ୍‌କୁ ଉପଦେଶ ଦେବାପାଇଁ ଆଇନ ପରାମର୍ଶଦାତା ସ୍ପଷ୍ଟଭାବରେ ଲେଖିଥିଲେ ଯେ "ଥାନାର ସବୁ କନେଷ୍ଟବଲ ତ ମକଦ୍ଦମା ଦାଏର କରିଛନ୍ତି । ସମାଜରେ ଲେଖାଅଛି ଯେ ଦୁଇଜଣ କନେଷ୍ଟବଲ୍ ଏପରି କଲେ; ସେମାନେ ତ ଏହିମାନଙ୍କ ଭିତରେ ଅଛନ୍ତି । ତେଣୁ ସରକାର ପକ୍ଷ ଆଇନ ଯାହା ଦରକାର କରୁଛି ମୁଦାଲାକୁ ଦୋଷୀ ସାବ୍ୟସ୍ତ କରିବା ପାଇଁ, ତାହା ଯୋଗାଇ ଦେଇଛନ୍ତି । ଏହି ମତ ଜାଣିଲା ପରେ ଚିଫ୍ ସେକ୍ରେଟେରୀ ପୋଲିସ୍ ଆଇ. ଜି. ଙ୍କୁ ଚିଠି ଲେଖିଥିଲେ ଯେ ମକଦ୍ଦମାକୁ ଏଭଳି ଚଳାଇବାକୁ ହେବ ଯେମିତିକି ମୁଦାଲା ସାମାନ୍ୟ ଦଣ୍ଡ ପାଇ ଖସି ନ ଯାଏ ।" ଏଇ ସରକାରୀ ଗୁପ୍ତ କଥା ସୁରେଶ ବାବୁ କହିଥିଲେ ଭାରତ ସ୍ୱାଧୀନତା ପାଇବାର ପାଖ ଅନେକ ବର୍ଷ ପରେ । ସେଇ ସବୁ ଚିଠିର ଗୋଟାଏ ଗୋଟାଏ ନକଲ କୋର୍ଟ ସବ୍‌ଇନସପେକ୍ଟର ଆଣି ତାହାଙ୍କୁ ତାଙ୍କ ବଙ୍ଗଳାରେ ଦେଖାଇଥିଲେ ରାୟ ଦିଆଯିବା ପୂର୍ବରୁ ।

ଆଇନ ପରାମର୍ଶଦାତାଙ୍କର ଆଇନଗତ ପରାମର୍ଶ ହିଁ ସୁରେଶ ବାବୁଙ୍କୁ ଅନ୍ୟ ଏକ ସୁସ୍ଥ ଦିଗ ପ୍ରଦର୍ଶନ କରିଥିଲା । ଆଇନଗତ ଅବତାରଣା କରି ମାଜିଷ୍ଟ୍ରେଟ୍ ସୁରେଶ ବାବୁ ତାହାଙ୍କ ରାୟରେ ଲେଖିଥିଲେ ଯେ "ଯେଉଁ ଦୁଇଜଣ ସିପାହୀଙ୍କ ମାନହାନୀ ହୋଇଛି ବୋଲି କୁହାଯାଉଛି, ସେମାନେ ଯଦି କୋର୍ଟରେ ଆସି କହୁନାହାନ୍ତି ଯେ, ଆମେ ହେଉଛୁ ଠିକ୍ ସେହି ଦୁଇଜଣ ସିପାହୀ ଯେଉଁମାନଙ୍କ ବିରୁଦ୍ଧରେ କି ସମାଜରେ ମାନହାନୀସୂଚକ ଅଭିଯୋଗ ହୋଇଥିଲା ମୁଦାଲାଙ୍କ ବିରୋଧରେ ମାନହାନୀ ଅଭିଯୋଗ ପ୍ରମାଣିତ ହେଲା ନାହିଁ ।"

ସେ ଦିନଥିଲା ୧୯୨୮ ମସିହା ଅକ୍ଟୋବର ୨୮ ତାରିଖ ।

ସେ ଦିନ ଅପରାହ୍ଣରେ କୋର୍ଟ ମାଜିଷ୍ଟ୍ରେଟ୍ ଜନସମୁଦ୍ରରେ ଉତ୍ତାଳ ତରଙ୍ଗ ଖେଳାଇ ତାହାଙ୍କ ରାୟରେ କେବଳ ଶେଷ ଅଂଶଟି ପଢ଼ି ଶୁଣାଇ ଦେଇଥିଲେ ଯେ ଗୋପବନ୍ଧୁ ଦୋଷୀ ସାବ୍ୟସ୍ତ ହେଲେ ନାହିଁ ।"

ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଖଲାସ ହେବା ରାୟ ଦେଇ ସାରିବା ପରେ ଆସାମୀ ଓ ମାଜିଷ୍ଟ୍ରେଟ୍ ଉଭୟେ ଉଭୟଙ୍କୁ ନମସ୍କାର କରିଥିଲେ ।

ଧୀରସ୍ଥିର ହୋଇ ସେଇ ଦୀର୍ଘ ଅଭିଳଷିତ ରାୟକୁ ଅପେକ୍ଷାକରି ରହିଥିବା ଜନସମୁଦ୍ର ଭିତରେ ସୃଷ୍ଟି ହୋଇଥିଲା ଏକ ଅପୂର୍ବ ଆଲୋଡ଼ନ—ସେ ଆଲୋଡ଼ନ ଆନନ୍ଦ ଉଚ୍ଛ୍ୱାସର ସେ ଆଲୋଡ଼ନ ବିଜୟ ଉଲ୍ଲାସର । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନାମ ସହିତ ପଣ୍ଡିତ ଗୋପବନ୍ଧୁଙ୍କ ଜୟଗାନ, ଉପସ୍ଥିତ ଲଳନାମାନଙ୍କର ହୁଳହୁଳିରେ ଗଗନ ପବନ ପ୍ରକମ୍ପିତ ହୋଇ ଉଠିଥିଲା । "ସେହି ଜୟଧ୍ୱନି, ଆନନ୍ଦ ଚିତ୍କାର ଶୁଣି ମୁଁ ଅବାକ୍ ହୋଇଗଲି । ମୋର ସମଗ୍ର ଶରୀର ଥରିବାକୁ ଲାଗିଲା, କାନ୍ଧ ଉଠିଥିଲା ।"—ଏ ଥିଲା ଖୋଦ୍ ମାଜିଷ୍ଟ୍ରେଟ୍‌ଙ୍କ ଉକ୍ତି ।

ତାହାହିଁ ତ ଥିଲା ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ । ଗୋଟିଏ ଝଡ଼ର ଅବସାନ ହେବା ପରେ ପରେ ଆଉ ଗୋଟିଏ ଝଡ଼ ସୃଷ୍ଟି ହୋଇ

ଯାଇଥିଲା ଆଗେ ଆଗେ । ଓଡ଼ିଶାର ପ୍ରଥମ ରାଜନୈତିକ ବିଚାରଣାର ଝଡ଼ ଶେଷ ହେବା ପରେ ପରେ ଆରମ୍ଭ ହୋଇଥିଲା ଯୁବକ ମାଜିଷ୍ଟ୍ରେଟ୍ ସୁରେଶ ବୋଷଙ୍କ ସରକାରୀ ଚାକିରି ଜୀବନରେ ଏକ ଭୂମିକମ୍ପ ବାତ୍ୟା ।

ସରକାର ଚାହୁଁଥିଲେ ଗୋପବନ୍ଧୁ ଗୁରୁତର ଅବୈଧ ଅଭିଯୋଗରେ ଅଭିଯୁକ୍ତ ହୁଅନ୍ତୁ ଓ କଠୋର ଦଣ୍ଡ ପାଆନ୍ତୁ । କିନ୍ତୁ ମାଜିଷ୍ଟ୍ରେଟ୍ ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଇଥିଲେ— ଦୟା ଦେଖାଇ କିମ୍ବା ପ୍ରିୟାପ୍ରୀତି ଆଚରଣ କରି ନୁହେଁ—ଖୋଦ୍ ଆଇନର ଅବତାରଣା କରି । କିନ୍ତୁ ତାହାର ପରିଣାମ ହୋଇଥିଲା ଅନ୍ୟ ପ୍ରକାରର ।

ସରକାରୀ ଚାକିରି କରିବାର ପ୍ରାୟ ଛଅ ବର୍ଷ ପରେ ଅଳ୍ପଦିନ ପାଇଁ ସୁରେଶ ବାବୁ ବିଲାତ ଯାଇଥିଲେ । ସେଠାରୁ ଫେରି କଟକରେ ପହଞ୍ଚିବା ପରେ ପରେ ତାହାଙ୍କୁ ପୁରୀ ବଦଳି କରିଦିଆଯାଇଥିଲା । ସେତେବେଳେ ପୁରୀର କଲେକ୍ଟର ଥିଲେ ରାୟ ବାହାଦୁର ଦୟାନିଧି ଦାସ ଓ ସଦର ଏସ୍. ଡି. ଓ. ଥିଲେ ହରିହର ମୁଜାରୀ । ସେଠାରୁ ପୁଣି ଖୋର୍ଦ୍ଧାକୁ ସେକେଣ୍ଡ ଅଫିସର ରୂପେ ଯିବାପାଇଁ ହୋଇଥିଲା । ସେଠି ଏସ୍: ଡି: ଓ: ରାୟବାହାଦୁର ଅଜୟଚନ୍ଦ୍ର ଦାସ ଥିଲେ ଓ ସେତେବେଳକୁ ସମାଜରେ ପ୍ରକାଶ ପାଇଥିବା ସମ୍ବାଦ ନେଇ ସରକାରୀ ମହଲରେ ଏକ ଗମ୍ଭୀର ଆଲୋଡ଼ନ ସୃଷ୍ଟି ହୋଇ ସାରିଥିବା ପ୍ରସଙ୍ଗରେ ଆଦୌ କିଛି ଜାଣି ନଥିଲେ ।

ଗୋପବନ୍ଧୁଙ୍କ କେସ୍ ବିଚାରଣାକରି ସରକାରୀ ଗୁପ୍ତ ନିର୍ଦ୍ଧାରଣ ଅନୁସାରେ ଗୋପବନ୍ଧୁଙ୍କୁ ଜେଲଦଣ୍ଡ ଦେବାକୁ ହେବ ଏବଂ ତାହା କଲେ ସେ ନିର୍ଣ୍ଣିତ ଭାବେ ଲୋକଙ୍କ ନିକଟରେ ନିନ୍ଦିତ ହେବେ ସେଥିପାଇଁ ଅଜୟ ବାବୁ କଲେକ୍ଟରଙ୍କ ସହିତ ବିଭିନ୍ନ ଯୁକ୍ତି କରିଥିଲେ ତାର ବିଚାରଣା ପୁରୀଠାରେ କରାଇବା ପାଇଁ । ଏବଂ କେବଳ ସେହି ଏକା ଭିତ୍ତିରେ ପୁରୀ ଏସ୍. ଡ଼ି. ଓ. ମୁଜାରୀ ବାବୁ ଯୁକ୍ତି କରିଥିଲେ ଘଟଣାଟି

ଯେଉଁଠି ଘଟିଛି ତାର ବିଚାରଣା ସେଇଠି ହିଁ ହେବା ଆଇନ୍ ସଙ୍ଗତ । ସେ ସବୁ ବାଦ ବିବାଦ ଭିତରେ କଲେକ୍ଟର ଆଦେଶ ଦେଇଥିଲେ ଯେ ମକଦ୍ଦମା ଖୋର୍ଦ୍ଧା କଚେରୀରେ ହିଁ ହେବ । ଅନନ୍ୟୋପାୟ ଦେଖି ସେଠିକା ଏସ୍.ଡି.ଓ. ଅଜୟ ବାବୁ ନିଜକୁ କେବଳ ସେଥିରୁ ବଞ୍ଚିବା ପାଇଁ ଧାର୍ଡ ଚେସ୍ତନମର ବ୍ୟବସ୍ଥା କରିଥିଲେ । ତେଣୁ ଆପାତତଃ ସବୁ ଦାୟିତ୍ୱ ବୋଝେଇ ହୋଇ ପଡିଥିଲା ମାତ୍ର ସାତବର୍ଷ ଚାକିରି କରିଥିବା ଯୁବକ ସୁରେଶଚନ୍ଦ୍ର ଘୋଷଙ୍କ ଉପରେ ।

ମକଦ୍ଦମାର ରାୟଦେଇ ସୁରେଶ ବାବୁ ବଙ୍ଗଳାକୁ ଫେରି ଆସିବାର ପର ମୁହୂର୍ତ୍ତରେ କୋର୍ଟ ସବ୍‌ଇନସ୍‌ପେକ୍ଟର ଆସି ତାହାଙ୍କ ବସାରେ ହାଜର ହୋଇ ଯାଇଥିଲେ । ହାତରେ ଥିଲା ଖଣ୍ଡିଏ ଦରଖାସ୍ତ ତାଙ୍କ ରାୟର ନକଲ ଦେବାପାଇଁ । ସେଇ ନକଲ ତୁରନ୍ତ ଦେଇଦେବା ପାଇଁ ପେସ୍କାରଙ୍କୁ ଆଦେଶ ଦେଇଥିଲେ ସେ ।

ତା ପରଦିନ ଯେତେବେଳେ ଅଜୟ ବାବୁଙ୍କ ସହ ସାକ୍ଷାତ କରିଥିଲେ ସେ ଯାହା କହିଥିଲେ ତାହା ବେଳେ ବେଳେ ସ୍ମରଣ କରୁଥିଲେ ସୁରେଶ ବାବୁ । "ସୁରେଶ, ତୁମେ କଅଣ କରିଲ । ଏକ ତରଫା କେସ୍ । ସରକାରଙ୍କ ଆଇନ ପରାମର୍ଶଦାତା ଅତି ଜଟିଳ ଲ-ପଏଣ୍ଟ ଉପରେ ନିର୍ଦ୍ଧାର୍ଯ୍ୟ ମତ ଦେଇଛନ୍ତି । ମୁଦାଲାଙ୍କୁ ନିଶ୍ଚୟ ଦୋଷୀ ସାବ୍ୟସ୍ତ କରିବାର କଥା । ତୁମେ ଏମିତି କାମ କେମିତି କଲ ?" ତାର ଉତ୍ତର ଦେଇ ସୁରେଶ ବାବୁ କହିଥିଲେ "ମଣିଷର ଭୁଲ ହୋଇଥାଏ । ଏଇଟି ବି ସେହିଭଳି ଭୁଲ ହୋଇଥିବ ।"

ଯେଉଁ ଦିନ ପାଟଣାରେ ଏହି କେସ୍‌ର ରାୟ ବିଷୟ ପହଞ୍ଚିଲା, କେତେଜଣ ଇଂରେଜ ଅଫିସରଙ୍କ ସମେତ ଜଣେ ଦୁଇଜଣ ହାଇକୋର୍ଟ ଜଜ୍ ମଧ୍ୟ ସେଇ ଏକାମତ ଦେଇଥିଲେ "ସେଇ ଟୋକା ମାଜିଷ୍ଟ୍ରେଟ୍‌ର ଆଇନ୍ ବିଷୟରେ କି ଧାରଣା ବା ଥାଇପାରେ ।"

ସରକାରଙ୍କ ତରଫରୁ ପାଟଣା ହାଇକୋର୍ଟରେ ସେହି କେସ୍‌ର ପୁନର୍ବିଚାର ପାଇଁ ଅପିଲ୍ ଦାଏର କରାଯାଇଥିଲା । ସରକାରୀ ଓକିଲ ସରକାରଙ୍କ ତରଫରୁ ଖୁବ୍ ଜବାବ ସୁଆଲ କରିଥିଲେ । ଅପର ପକ୍ଷରେ ଗୋପବନ୍ଧୁଙ୍କ ତରଫରୁ କୌଣସି ଓକିଲ ନିଯୁକ୍ତ କରାଯାଇ ନଥିଲା । କିନ୍ତୁ ତଥାପି ସୁରେଶ ବାବୁଙ୍କ ସଜାକୁ ହିଁ ହାଇକୋର୍ଟ କାଏମ୍ ରଖିଥିଲେ ।

କିନ୍ତୁ ତାର ପରିଣାମ ହୋଇଥିଲା ଅଦ୍ଭୁତ । ସରକାରଙ୍କ ଆକ୍ଷେପମୂଳକ ମନ୍ତବ୍ୟ ସୁରେଶ ବାବୁଙ୍କୁ ସରକାରୀ ଚାକିରିରୁ ଇସ୍ତଫା ଦେବାପାଇଁ ଏକ ପ୍ରକାର ବାଧ୍ୟ କରିଥିଲା ।

ସେ ଦିନଗୁଡ଼ିକର ଘଟଣା ପର ଜୀବନରେ, ଏପରିକି ଜୀବନର ଶେଷ ଦିନଗୁଡ଼ିକରେ ମଧ୍ୟ ସ୍ମରଣ କଲାବେଳେ ସୁରେଶ ବାବୁଙ୍କ ଆଖି ଲୁହ ଛଳଛଳ ହୋଇ ଯାଉଥିଲା । ନିଜ ଅଭିଜ୍ଞତାରୁ ଶ୍ରୀ ଦୁର୍ଗାଦାସ ସୁରେଶ ବାବୁଙ୍କ ସମ୍ପର୍କରେ ଲେଖିଥିଲେ "ଏବେ ଗୋପବନ୍ଧୁଙ୍କ ଆଦର୍ଶ ଓ ମାନ୍ତ ସ୍ମରଣ କରି ଅରେ କୋହ ସମ୍ଭାଳି ନପାରି କହି ଉଠିଥିଲେ "ଗୋପବନ୍ଧୁଙ୍କର ଅନେକ ଗୁଣଥିଲା । କେତେକ କ୍ଷେତ୍ରରେ ମହାତ୍ମାଗାନ୍ଧୀଙ୍କ ଅପେକ୍ଷା ତାଙ୍କୁ ମୁଁ ଉଚ୍ଚ ଆସନ ଦିଏ ।" (୧)

ତେବେ ଗୋପବନ୍ଧୁଙ୍କ ନେତୃତ୍ୱକୁ ସରକାରଙ୍କ କପଟ ଦୃଷ୍ଟିଥିଲା ଓ ତାହାଙ୍କର ସମ୍ମାନରେ ଆଂଚ ଆଣିବାପାଇଁ ସରକାର କପଟ ବ୍ୟାକୁଳ ଥିଲେ ତାହା ସେହି କେସ୍ ଘଟଣାରୁ ସ୍ପଷ୍ଟ ଅନୁମାନ କରାଯାଇପାରେ । ସରକାର ଗୋପବନ୍ଧୁଙ୍କୁ ଓଡ଼ିଶାର ପ୍ରଧାନ ନେତା ବୋଲି ମନେ କରୁଥିଲେ ମଧ୍ୟ ଗୋପବନ୍ଧୁ ଯଥାର୍ଥରେ ମନେ କରୁଥିଲେ ଉତ୍କଳର ନେତା ସେ ନଥିଲେ — ଉତ୍କଳର ପ୍ରକୃତ ନେତା ସ୍ୱୟଂ ଜଗନ୍ନାଥ — ନିଜେ ନାରାୟଣ ।

ମକଦ୍ଦମାରୁ ଖଲାସ ହେବା ପରେ ପରେ ତାହାଙ୍କ ଭବିଷ୍ୟତ କର୍ମ ପନ୍ଥାର ପ୍ରଧାନ ଅଂଶ ଥିଲା ଭାରତୀୟ ସ୍ୱାଧୀନତା ସଂଗ୍ରାମର ବର୍ତ୍ତୀ

(୧) ବାର୍ଷିକ ଶ୍ରାଦ୍ଧ ସଂଖ୍ୟା 'ସମାଜ' — ୧୯୬୪, ପୃଷ୍ଠା — ୮୧ .

ଓଡ଼ିଶାର ପୁରପଲ୍ଲୀରେ ପ୍ରଚାର କରିବା ସଙ୍ଗେ ସଙ୍ଗେ ସ୍ୱରାଷ୍ଟ୍ରୀୟ ଜାତୀୟ କଂଗ୍ରେସର କାର୍ଯ୍ୟକ୍ରମକୁ ଅଧିକ ମାତ୍ରାରେ ଜନସାଧାରଣଙ୍କ ନିକଟରେ ଉପସ୍ଥାପିତ କରି ସେମାନଙ୍କ ସହିଚ୍ଛା ତଥା ସକ୍ରିୟ ସହଯୋଗକୁ ସ୍ୱାଗତ କରିବା । ତେଣୁ ଗାନ୍ଧିଜୀଙ୍କ ଭକ୍ତ ଗୋପବନ୍ଧୁ ମଧ୍ୟ ଓଡ଼ିଶାର ସର୍ବତ୍ର ଖଦୀ ପ୍ରଚାର, ମୁଷ୍ଟିଭିକ୍ଷା ଇତ୍ୟାଦି କାର୍ଯ୍ୟକ୍ରମର ପ୍ରଚାର ତଥା ସଂଗଠନ କାର୍ଯ୍ୟରେ ଅଧିକ ମନ ବଳାଇ ଥିଲେ ।

* ଏହି ପରିଚ୍ଛେଦର ୧ ବ୍ୟତୀତ ସମସ୍ତ ଉଦ୍ଧୃତାଂଶ ଜ୍ଞାନମଣ୍ଡଳ ସଂକଳନ ଶ୍ରୀ ବିନୋଦ କାନୁନ୍‌ଗୋଙ୍କ ଉତ୍କଳମଣି ଗୋପବନ୍ଧୁ ପୁସ୍ତକର ୧୧୦ରୁ ୧୧୮ ପୃଷ୍ଠା ମଧ୍ୟରୁ ଉଦ୍ଧାର କରାଯାଇଛି । ୧୯୫୭ ଜୁଲାଇ ୧୯ ତାରିଖରେ ମାନ୍ୟବର ସୁରେଶଚନ୍ଦ୍ର ବୋଷଙ୍କ ନିକଟରୁ ସେ ଏହି ବିବରଣୀ ସଂଗ୍ରହ କରିଥିଲେ ।



॥ ଦଶ ॥

# ଜ୍ଞାନଦୀପ ଜାଳି କର ଚିତ୍ତ ସମାହିତ

ସେତେବେଳେ ଭାରତର ବିଭିନ୍ନ ସ୍ଥାନରେ ଯେପରି ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଅଯଥା ବିଭିନ୍ନ ଦୋଷଯୁକ୍ତ କରାଯାଉଥିଲା ଓଡ଼ିଶାରେ ମଧ୍ୟ ଇଂରେଜ ସରକାରଙ୍କ କର୍ମଚାରୀମାନେ ଠିକ୍ ସେହି ପନ୍ଥା ଅନୁସରଣ କରିଥିଲେ । ପୁଣି ଗୋପବନ୍ଧୁଙ୍କ ଉପରେ ବିଶେଷ ଭାବେ ଆକ୍ରୋଶମୂଳକ ପଦକ୍ଷେପମାନ ନେବାପାଇଁ ଆଗ୍ରହୀ ହୋଇଥିଲେ ଅଭିଯୋଗରୁ ଖଲାସ ହୋଇଥିବା ଯୋଗୁଁ । ଗୋଟିଏ ଅଭିଯୋଗରୁ ମୁକ୍ତ ହେବାର ଛଅମାସ ପରେ ପୁଣି ଅଭିଯୋଗର ସଂଖ୍ୟା ବୃଦ୍ଧି ହୋଇଥିଲା । ସେଥିରୁ ଗୋଟିଏ ଥିଲା ଉତ୍କଳରେ ୧୪୪ ଧାରା ଭଙ୍ଗ କରିବା ଓ ଆଉ ଗୋଟିଏ ଥିଲା କନିକାରେ ସରକାରୀ କାର୍ଯ୍ୟରେ ବିରୋଧ କରିବା ସଙ୍ଗେ ସଙ୍ଗେ ସରକାରଙ୍କୁ ଅପମାନିତ କରିବା ଅଭିଯୋଗ ।

ବାଲେଶ୍ୱର ଜିଲ୍ଲା କଲେକ୍ଟରଙ୍କ ୧୪୪ ଧାରା ଭଙ୍ଗ କରିବା ଅପରାଧରେ ଗିରଫ କରିବା ପାଇଁ ଯେତେବେଳେ ପୋଲିସ୍ ପରୱାନା ନେଇ ଗୋପବନ୍ଧୁଙ୍କ ନିକଟକୁ ଆସିଥିଲା ସେତେବେଳେ ସେ ଥିଲେ ପୁରୀରେ । ସକାଳୁ ସକାଳୁ ନରେନ୍ଦ୍ର ପୁଷ୍କରିଣୀରେ ସ୍ନାନସାରି ଘରକୁ ଫେରୁଥିଲେ । ପୁରୀର ବଜାର ନିକଟରେ ତାହାଙ୍କର ଗୋଟିଏ ବସାଘର ଥିଲା । ବସା ଘରକୁ ଫେରିବା ରାସ୍ତାରେ ପୋଲିସ୍ ତାହାଙ୍କୁ ଦେଖିଥିଲେ ଓ ଗିରଫ କରିବା କଥା କହିଥିଲେ । ଗୋପବନ୍ଧୁ ବସାରେ ତାଙ୍କର ଦୈନନ୍ଦିନ ପୂଜା ଶେଷ କରିବା ପର୍ଯ୍ୟନ୍ତ ସେମାନଙ୍କୁ ଅପେକ୍ଷା କରିବାକୁ କହି କହିଥିଲେ ଯିବାଲାଗି ଗୋଟିଏ ଘୋଡ଼ାଗାଡ଼ି ଡାକି ଆଣିବା ଲାଗି । ଯେତେବେଳେ ଗୋପବନ୍ଧୁଙ୍କୁ ଇଂରେଜ ସରକାର ଗିରଫ କରୁଥିଲେ ସେ ସବୁବେଳେ ରୁହୁଁଥିଲେ; ବରଂ ଜିଦ୍ କରୁଥିଲେ ଗାଡ଼ି ନହେଲେ ଚାଲିବ ନାହିଁ ।

ଗୋପବନ୍ଧୁ ବାବୁ ଗିରଫ ହୋଇଯିବା ପରେ ତାହାଙ୍କୁ କଟକ ଜେଲ୍‌ରେ ରଖାଯାଇଥିଲା । କିନ୍ତୁ ମକଦ୍ଦମା ବିଚାର ଲାଗି ନିର୍ଦ୍ଦିଷ୍ଟ ଦିନଗୁଡ଼ିକରେ ତାହାଙ୍କୁ ହାତକଡ଼ି ଦେଇ ବାଲେଶ୍ୱର ନିଆଯାଉଥିଲା ସକାଳୁ ଓ ବିଚାରଣା ପରେ ନିତ ସନ୍ଧ୍ୟାରେ ପୁଣି କଟକ ଅଣାଯାଉଥିଲା ।

ତାଙ୍କର ଅନୁଚର ରାମା ତାଙ୍କ ପାଖେ ପାଖେ ହିଁ ରହୁଥିଲା । ଗୋପବନ୍ଧୁ କଟକ ଜେଲ୍‌ରେ ରହିବାବେଳେ ରାମା ଶୋଉଥିଲା କଟକ ରେଳଷ୍ଟେସନରେ କିନ୍ତୁ ଖିଆପିଆ କରୁଥିଲା ସ୍ୱରାଜ୍ୟ ଆଶ୍ରମରେ । ତାର ମୁନିବଙ୍କ ଲାଗି ଖାଦ୍ୟ ମଧ୍ୟ ସେହି ସ୍ୱରାଜ୍ୟ ଆଶ୍ରମରୁ ହିଁ ନେଇ ଦେଉଥିଲା ଜେଲ୍‌କୁ । ବାଲେଶ୍ୱରରେ ବି ସେଇଆ । ସେଇ ସ୍ୱରାଜ୍ୟ ଆଶ୍ରମରୁ ଖାଦ୍ୟ ନେଇ ଗୋପବନ୍ଧୁଙ୍କୁ ଦିଏ ଓ ସେ ମଧ୍ୟ ଖାଏ । ସେଇ ଗୋଟାଏ ରେଳରେ ଏକାଠି ଯାଏ ଓ ଆସେ । ୧୯୧୧ ମସିହାରୁ ଗୋପବନ୍ଧୁଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏକାଠି ସାଙ୍ଗେ ସାଙ୍ଗେ ରହିଥିଲା ।

ତତ୍ପୂର୍ବରୁ ଓଡ଼ିଶାର ସ୍ଥାନେ ସ୍ଥାନେ ସ୍ୱରାଜ୍ୟ ଆଶ୍ରମ ଗଠନ କରିଥିଲେ ଗୋପବନ୍ଧୁ । ସେଗୁଡ଼ିକ ଥିଲା ଜାତୀୟ କଂଗ୍ରେସର କେନ୍ଦ୍ରସ୍ଥଳ । ତତ୍ ସଙ୍ଗେ ସଙ୍ଗେ ସ୍ୱରାଜ୍ୟ ସେବକ ସଙ୍ଘ ଗଠନ କରିଥିବା ଅଭିଯୋଗରେ ମଧ୍ୟ ଗୋଟାଏ ମକଦ୍ଦମା ତାଙ୍କ ନାମରେ ରୁଜୁଥିଲା କଟକ କୋର୍ଟରେ ।

୧୯୨୨ ମସିହାରେ ଦିନେ କଟକରେ ଉଭୟ ମକଦ୍ଦମା ବିଚାରର ଶେଷ ନିଷ୍ପତ୍ତି ଶୁଣାଇ ଦିଆଯାଇଥିଲା ଯେ ବାଲେଶ୍ୱରରେ ୧୪୪ ଧାରା ଭଙ୍ଗ କରିବା ଅପରାଧରେ ଗୋପବନ୍ଧୁଙ୍କୁ ୬ ମାସ ଓ ସ୍ୱରାଜ୍ୟ ସେବକ ସଙ୍ଘ ଗଠନ କରିବା ଅଭିଯୋଗରେ ୧ ବର୍ଷ ୬ ମାସ ସର୍ବମୋଟ ୨ ବର୍ଷ ବିନାଶ୍ରମେ ଜେଲ୍ ଦଣ୍ଡଭୋଗ କରିବାକୁ ହେବ ।

କଟକ ସହର ସାରା ସେ ସମ୍ବାଦ ତରଙ୍ଗ ଖେଳାଇ ଦେଲା ଖୁବ୍ କମ୍ ସମୟ ଭିତରେ । ଲୋକଙ୍କ ମନରେ ଉତ୍ତେଜନା ଖେଳିଗଲା । କିନ୍ତୁ ସେ ଥିଲେ ନିର୍ବିକାର । ସେ ତାଙ୍କ ଅନୁଚର ରାମଚନ୍ଦ୍ରଙ୍କୁ ଗୋଟାଏ ଚାଲିକା ନିଜ ହାତରେ ଲେଖି ଦେଇଥିଲେ । ସେଥିରେ ଲେଖା ହୋଇଥିଲା

ଗଡ଼ 'ଦୁଇବର୍ଷ ଲାଗି ମାଡ଼ା ଯାଡ଼ା ତାଙ୍କର ଆବଶ୍ୟକ—ବହିପତ୍ରଠାରୁ ଆରମ୍ଭ କରି ଲୁଗାପଟା ପର୍ଯ୍ୟନ୍ତ । ତାଙ୍କୁ ନେଇ ରାମଚନ୍ଦ୍ର ଗଲା ସଦ୍ୟବାଗ । ସେଇଠି ରାଧାନାଥ ରଥଙ୍କ ସହାୟତାରେ ଆବଶ୍ୟକୀୟ ଜିନିଷପତ୍ର ସବୁ ଗୋପବନ୍ଧୁଙ୍କୁ ନେଇ ଦେଇଥିଲା । ଗୋପବନ୍ଧୁ ରାମଚନ୍ଦ୍ରଙ୍କୁ ଜେଲ୍ ଯିବା ପୂର୍ବରୁ କହିଥିଲେ, "ରାମା, ତୁ ଲୁଗାବୁଣି ଶିଖ, ମୁଁ ଜେଲ୍‌ରୁ ଫେରିଲାବେଳକୁ ଦେଖିବି ତୁ ନିଜ ହାତରେ ସୂତାକାଟି ଲୁଗାବୁଣି ପିନ୍ଧୁଥିବୁ !" (୧)

ଗୋପବନ୍ଧୁଙ୍କ ବିଶ୍ୱସ୍ତ ରାମା ତାଙ୍କ କଥା ରକ୍ଷା କରିଥିଲା ।

ହାକିମଙ୍କ ରାୟ ଦୁଇବର୍ଷ ଦଣ୍ଡାଦେଶ ଶୁଣାଣି ପରେ ପ୍ରାୟ ଛଅମାସ ପାଇଁ କଟକ ଜେଲ୍‌ରେ ତାହାଙ୍କୁ ରଖାଯାଇଥିଲା କନିକା ଘଟଣା ସମ୍ପର୍କରେ ସରକାର କରିଥିବା ମାନହାନି ମକଦ୍ଦମାର ବିଚାର ପାଇଁ । କିନ୍ତୁ ଛଅମାସ ପରେ ସେ ମକଦ୍ଦମାଟିକୁ ସରକାର ଉଠାଇ ନେଇଥିଲେ । ୧୯୨୩ ମସିହା ଜାନୁୟାରୀ ମାସରେ ହଠାତ୍ ରାତିରେ କଟକ ଜେଲ୍‌ରୁ ତାହାଙ୍କୁ ହଜାରିବାଗ୍ ଜେଲ୍‌କୁ ନିଆଯାଇଥିଲା । ସେଇଠି ହଜାରିବାଗ୍ ଜେଲ୍‌ର ସୁଉଚ୍ଚ ପାଚେରୀଘେରା ରୁଦ୍ଧ କୋଠରୀ ଭିତରେ ବାକୀ ଜେଲ୍ ମିଆଦ ପ୍ରାୟ ଦେଢ଼ବର୍ଷ ଅତିବାହିତ କରିଥିଲେ ଗୋପବନ୍ଧୁ—୧୯୨୪ ମସିହା ଜୁନ୍‌ରେ ଖଲାସ ହେବା ପର୍ଯ୍ୟନ୍ତ ।

କର୍ମବୀର ଗୋପବନ୍ଧୁ ହଜାରିବାଗ ଜେଲ୍‌ର ରୁଦ୍ଧ କୋଠରୀରେ ଆବଦ୍ଧ ହୋଇ ମଧ୍ୟ ନିଷ୍କ୍ରିୟ ହୋଇ ରହିପାରି ନଥିଲେ । ତାଙ୍କର ସୁପ୍ତଚେତନା ରାଜ୍ୟରେ ଆଲୋଡ଼ନାର ଅନେକ ତରଙ୍ଗ ସୃଷ୍ଟି ହୋଇଥିଲା । ସାହିତ୍ୟିକ ଗୋପବନ୍ଧୁ ସଜାଗ ହୋଇ ଉଠିଥିଲେ ।

ଛାତ୍ର ଜୀବନରୁ ହିଁ ଗୋପବନ୍ଧୁଙ୍କ କାବ୍ୟିକ ଚେତନାର ଉନ୍ମେଷ ହୋଇଥିଲେ ସୁଦ୍ଧା ପରଜୀବନରେ ପ୍ରଥମେ ଜନ ସେବାବ୍ରତ ଏବଂ ତା ପରେ ଜନନୀ ଜନ୍ମଭୂମିର ଶୃଙ୍ଖଳ ଛିନ୍ନ କରିବା ଉଦ୍ଦେଶ୍ୟ ନେଇ, ଜାତିର

(୧) ଉତ୍କଳମଣି—ଗୋପୀନାଥ ମହାନ୍ତି, ପୃ-୧୨୦

ଜନକ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱକୁ ଗ୍ରହଣ କରି ଅସହଯୋଗ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବା ପରେ ସେ ଆଦୌ ସମୟ ପାଇ ନଥିଲେ କବିତା ଲେଖିବା ପାଇଁ । ତେଣୁ ପ୍ରାୟ ୧୯୦୦ ମସିହାରୁ ୧୯୨୩ ମସିହା ପର୍ଯ୍ୟନ୍ତ ଦୀର୍ଘ ୨୩ ବର୍ଷର ବ୍ୟବଧାନ ମଧ୍ୟରେ ଗୋପମାନସ କେବଳ ପ୍ରାୟ ଦୁଇଟି କବିତାରେ ହିଁ ସୀମିତ ରହିଥିଲା ଏବଂ ସେ ଦୁଇଟି ହେଲା 'ସରଳତା' ଓ 'ଜାଗରଣ' । ସେଇ ଉଭୟ କବିତା ମୁକୁରରେ ପ୍ରକାଶ ପାଇଥିଲା ।

ତେବେ ରାଜନୈତିକ ବନ୍ଦୀଭାବରେ ଯେତେବେଳେ ଗୋପବନ୍ଧୁ ହଜାରିବାଗ ଜେଲ୍‌କୁ ନିଆଯାଇଥିଲେ, ସେ ମନେ କରିଥିଲେ ତାହାହିଁ ତାଂକ ପାଇଁ ତୀର୍ଥଭୂମି, ପବିତ୍ର ସ୍ଥାନ । ବନ୍ଦୀଶାଳାର ନୀରବ, ନିର୍ଜନ କୋଠରି ଭିତରେ ପ୍ରତି ମୁହୂର୍ତ୍ତରେ ତାଂକ ମନ ଆକାଶରେ ତାରା ହୋଇ ଫୁଟି ଉଠିଥିଲା ଅତୀତ ଜୀବନର ବାସ୍ତବ ଅନୁଭୂତିଗୁଡ଼ିକ ଆଶା-ନିରାଶାର କ୍ଷିପ୍ର ଚିନ୍ତାଗୁଡ଼ିକ । ସେଇ ଅତୀତ ଅନୁଭୂତି, ବର୍ତ୍ତମାନର ଅବସ୍ଥା ଓ ଭବିଷ୍ୟତର ଆଶାନିରାଶାଗୁଡ଼ିକ କଲମ ମୁନରେ ରୂପ ନେଇଥିଲା ତିନୋଟି କବିତା ଗ୍ରନ୍ଥ ହୋଇ – କାରାକବିତା, ବନ୍ଦୀର ଆତ୍ମକଥା ଏବଂ ଧର୍ମପଦ । ସେଗୁଡ଼ିକ ଥିଲା ଗୋପବନ୍ଧୁଂକ କାରା ଜୀବନର ସ୍ମାରକୀ ।

କାରା କବିତା କେତୋଟି ଶ୍ରେଷ୍ଠ ଶ୍ରେଷ୍ଠ କବିତାର ଏକ ଗୁଚ୍ଛ । ବିଶ୍ୱପ୍ରେମୀ ଗୋପବନ୍ଧୁଂକର ସ୍ୱଦେଶପ୍ରାଣତା ତଥା ବିଶ୍ୱପ୍ରାଣତା ବିଶେଷ ଭାବରେ ପରିପ୍ରକାଶ ବିଭିନ୍ନ କବିତାରେ । ଦେଶରେ ତତ୍‌କାଳୀନ ରାଜନୈତିକ ଘନଘଟାରୁ ମୁକ୍ତିପାଇଁ ଯେଉଁ ସଂଗ୍ରାମ ଦରକାର, ଦେଶବାସୀଙ୍କୁ ଉତ୍ତିଷ୍ଠିତ କରାଇବା ପାଇଁ ଯେଉଁ ଉତ୍ସାହ, ଉଦ୍ଦୀପନା ଦରକାର, ସେସବୁର ଆଧାର କାରା କବିତା କହିଲେ ବୋଧହୁଏ ଅତ୍ୟୁକ୍ତି ହେବ ନାହିଁ ।

କବିଂକ ଜୀବନର ନିଗୂଢ଼ତତ୍ତ୍ୱ ନିହିତ "ବନ୍ଦୀର ଆତ୍ମକଥା"ରେ । ଯଦ୍ୟପି କାରା କବିତା ପରି ବନ୍ଦୀର ଆତ୍ମକଥାରେ ମଧ୍ୟ ଦେଶାତ୍ମବୋଧ ଓ ସ୍ୱଦେଶପ୍ରାଣତା ପରିସ୍ଫୁଟ ତଥାପି ବିରହ ବେଦନାନୁଭୂତି କମ୍ବା ବିଷାଦ-

ବାଦର ଗୁମ୍ଫା ଏଥିରେ ପରିଦୃଷ୍ଟ ନୁହେ । ବରଂ ତାଙ୍କର ଲେଖନୀ ଜଣେ ସଂଗ୍ରାମୀ ବୀରର ଖଡ଼୍ଗରେ ପରିଣତ ହୋଇଛି ଏଠି । ତତ୍କାଳୀନ ଓଡ଼ିଶାର ଜନଗଣଙ୍କ ରାଜନୈତିକ ଓ ଅର୍ଥନୈତିକ ଜୀବନର ଇତିହାସ, ଦୁଃଖ ଦୈନ୍ୟ ପ୍ରପୀଡ଼ିତ ଜନସାଧାରଣଙ୍କ କରୁଣ କାହାଣୀର ସ୍ପଷ୍ଟ ଚିତ୍ରର ଆଲେଖ୍ୟ ଏଠି ଦେଖିବାକୁ ମିଳେ । 'ଉତ୍କଳର ନେତା' ରୂପେ 'ନରେ ନାରାୟଣ'ଙ୍କୁ ସ୍ୱୀକୃତି ପ୍ରଦାନ କରିନେଇଛନ୍ତି ସେ ।

ଜନଶକ୍ତିକୁ ଚରମ ଆଧାର କରି ସୃଷ୍ଟି ଗୋପବନ୍ଧୁଙ୍କ ଜେଲ୍ ଜୀବନର ଏକ କୃତି-ଧର୍ମପଦ; ଏକ କମ୍ବଦନ୍ତୀମୂଳକ ଗାଥା କାବ୍ୟକୁସୁମ । ଅଧ୍ୟାପକ ନାରାୟଣ ଚତୁର୍ବେଦୀଙ୍କ ଭାଷାରେ "ଦାସେ ଆପଣେ—ଦାସ ଆପଣଂକ 'କାରା କବିତା', 'ବନ୍ଦୀର ଆତ୍ମକଥା', 'ଧର୍ମପଦ' ଜଣେ କାରାରୁଦ୍ଧ ବନ୍ଦୀର ଆତ୍ମଚେତନା । ଦେହ ସହିତ ଆତ୍ମାର ସମ୍ପର୍କ କଣ ? ଆବଦ୍ଧ ଦେହ । ଚିରମୁକ୍ତ ଆତ୍ମାର ଏ ସନ୍ଦେଶ ଖଣ୍ଡିତ, ଦ୍ୱିଧାଗତ ମାନବ ମନର, ମାନବିକତାର ଏକ ଅଖଣ୍ଡ ପ୍ରକାଶ, ଏକ ପରିବ୍ୟାପ୍ତ ବିକାଶ । ପ୍ରତିଭୂ ସ୍ୱାଧିକାରର ଚତୁର୍ବର୍ଗ । ଏହି ଦୃଷ୍ଟିରୁ ନିର୍ଜନ ପ୍ରକୋଷ୍ଠରେ ରଚିତ ପ୍ରତିଟି କବିତା ସ୍ୱୟଂସମ୍ପୂର୍ଣ୍ଣ । ସଂପୂର୍ଣ୍ଣ ମୂର୍ତ୍ତି ହୋଇଛି । ବନ୍ଦୀର ସ୍ୱଦେଶ ଚିନ୍ତା ।" (୧)

ଗୋପବନ୍ଧୁଙ୍କ ବନ୍ଦୀ ଜୀବନର ଉଲ୍ଲେଖନୀୟ ସୃଷ୍ଟି ବନ୍ଦୀର ଆତ୍ମକଥା ତଥା ତାଙ୍କ କାବ୍ୟକବିତାର ଉତ୍କର୍ଷତା ସମ୍ପର୍କରେ ଆଲୋକପାତ କରିବାକୁ ଯାଇ ଓଡ଼ିଶାର ପ୍ରଖ୍ୟାତ ଔପନ୍ୟାସିକ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଲେଖିଛନ୍ତି, "କବି ଗୋପବନ୍ଧୁ ଓଡ଼ିଆ ସାହିତ୍ୟରେ ଯୁଗାନ୍ତକାରୀ ନୂଆ ଭାବ ଓ ନୂଆ ଚେତନାର ପ୍ରବର୍ତ୍ତକ, ତା ବି ଗୋଟିଏ ବିସ୍ମୟକର ଆବିର୍ଭାବ । ତାର ଉତ୍କର୍ଷ ଏତେ ଦିଗରୁ ଆଲୋଚନୀୟ ଯେ ସଂକ୍ଷେପରେ ସେ ବିଷୟରେ କିଛି କହିବା ଧୃଷ୍ଟତା ହେବ । ସେ ନାନାପ୍ରକାର ଅତି ଆଧୁନିକ ଏକସ୍‌ପେରିମେଣ୍ଟ କରିଗଲେ । ତାର ପ୍ରଧାନ ଆଭିମୁଖ୍ୟ ଅନ୍ତରର ଭାବକୁ ଉନ୍ମେଷର ସ୍ୱାଭାବିକ ଛନ୍ଦ ପର୍ଯ୍ୟାୟରେ ପ୍ରକାଶ କରିବା । 'ବନ୍ଦୀର ଆତ୍ମକଥା'ର କିଛି ଅଂଶର ଇଂରେଜୀ

(୧) ଯୁଗପୁରୁଷ ଗୋପବନ୍ଧୁ - ସଂ. ସୂର୍ଯ୍ୟନାରାୟଣ ଦାସ, ପୃ ୧୯୫

ଅନୁବାଦ ମାଦ୍ରାଜ ସାହିତ୍ୟ ସଭାରେ କେତେକ ଭଏରନାମ କବିଙ୍କୁ ଉଦ୍ଦୀପ୍ତ ଓ ଅଧୀର କରିବାର ମୁଁ ଦେଖିଥିଲି । ସେମାନେ କହିଥିଲେ ଏଇ ଧାଡ଼ିଗୁଡ଼ିକ ଆମ ବିପ୍ଳବର ମନ୍ତ୍ର ହେବ । ଆମକୁ ଯୁଗେ ଯୁଗେ ଉଦ୍‌ବୁଦ୍ଧ କରିବ । ଓଡ଼ିଆ ସାହିତ୍ୟରେ ମଧ୍ୟ ଆଧୁନିକତାର ପ୍ରବର୍ତ୍ତକ ଥିଲେ ଗୋପବନ୍ଧୁ । ସାମାଜିକ ଚେତନା ସାଧାରଣ ବ୍ୟକ୍ତିକୁ ମର୍ଯ୍ୟାଦା ଓ ତା ପ୍ରତି ଗଭୀର ସହାନୁଭୂତି ଅନ୍ୟାୟ ଓ ଅତ୍ୟାଚାରର ବିରୁଦ୍ଧରେ ଅଭିଯାନ, ଦେଶର ସମୃଦ୍ଧିକ ଚେତନାର ରୂପାୟନ, ରୂପ ଓ ଭାବ ସୃଷ୍ଟି ପାଇଁ ଶବ୍ଦ ବାଛିବା ଓ ମନ୍ତ୍ରପରି ତାକୁ ବ୍ୟବହାର କରିବା, ସର୍ବୋପରି କବିତାରେ ବୌଦ୍ଧିକତା, ଏହିପରି ଆଧୁନିକ କବିତାରେ ନାନାଗୁଣ ତାଙ୍କ କବିତାରେ ପ୍ରସ୍ଫୁଟିତ ।" (୨)

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଗୋପବନ୍ଧୁଙ୍କ ସାହିତ୍ୟ କୃତିର ପରିମାଣ ଗଣି ଗଣି ନଥିଲା । ଖୁବ୍ କମ୍ ପରିମାଣରେ ସାହିତ୍ୟ ସୃଷ୍ଟି କରିଥିଲେ ମଧ୍ୟ ସେ ଜଣେ କବିଭାବରେ ସର୍ବଜନଗ୍ରାହ୍ୟ ହୋଇ ପାରିଥିଲେ । ତାଙ୍କର ରଚନାବଳୀ ଥିଲା ସର୍ବଜନବୋଧ, ଭାଷାଥିଲା ସରଳ, ସାବଲୀଳ ଓ ତାଙ୍କ ହୃଦୟର ଭାଷା ଏବଂ ବକ୍ତବ୍ୟ ଥିଲା ଜନଜୀବନର ସାଧାରଣ କଥା । ସାହିତ୍ୟିକ ଗୋପବନ୍ଧୁଙ୍କ କୃତି ଅତି ସୀମିତ । ଅବକାଶ ଚିନ୍ତା, ଧର୍ମପଦ, ଗୋ ମାହାତ୍ମ୍ୟ, କାରା କବିତା ଓ ବନ୍ଦୀର ଆତ୍ମକଥା । ସେଗୁଡ଼ିକୁ ବାଦ୍ ଦେଲେ ଆଶା, ସମାଜ ଓ ସତ୍ୟବାଦୀରେ ଭାରତର ସମସାମୟିକ ସମସ୍ୟାଗୁଡ଼ିକ ଉପରେ କେତେଟା ପ୍ରବଂଧ ଲେଖିବା ସଙ୍ଗେ ସଙ୍ଗେ ପରିପର୍ଦ୍ଦକାର ସମ୍ପାଦକୀୟଗୁଡ଼ିକ ଗୋପବଂଧୁଙ୍କ ଅନୁପମ ଗଦ୍ୟ ସାହିତ୍ୟ; ସେ ଯେତେ କମ୍ ପରିମାଣ ହେଉ ପଛକେ ଓଡ଼ିଆ ସାହିତ୍ୟର ଜଣେ ସମାଲୋଚକ, ସତ୍ୟବାଦୀ ବିଦ୍ୟାଳୟର ପ୍ରଥମ ଅଧ୍ୟାପକ ଚିନ୍ତାମଣି ଦାଶଙ୍କ ମତରେ "ଗୋପ ସାହିତ୍ୟର ପରିମାଣ ସ୍ୱଳ୍ପ ହେଲେହେଁ ତାହା ମୂଲ୍ୟବାନ, ଚନ୍ଦନ ପରି ତାର ସୌରଭ ଦିଗଦିଗନ୍ତ ବିସ୍ତୃତ । ଓଡ଼ିଆ ଜାତିପ୍ରତି ସେ ସ୍ୱଳ୍ପ ସାହିତ୍ୟ ଚିର ପ୍ରଦୀପ୍ତିମନ୍ତ ଆଲୋକବର୍ତ୍ତିକା । ସେ କୃତିରେ କେବଳ

---

(୨) ଉତ୍କଳମଣି—ଗୋପୀନାଥ ମହାନ୍ତି, ପୃ ୧୧

ଫସ୍ତି ନାହିଁ, ନୂତନତ୍ୱର ଦିଗଦର୍ଶନ ଅଛି × × × ସୃଷ୍ଟି ସ୍ୱଳ୍ପ ହେଲେ ସୁଦ୍ଧା ଗୋପ ସାହିତ୍ୟ ରତ୍ନ ପ୍ରସବ, ବିଶ୍ୱଜନୀନ, ଆତ୍ମାର ଊର୍ଦ୍ଧ୍ୱାୟନର ପ୍ରଶସ୍ତ ସେତୁ, ପବିତ୍ରତାର ପ୍ରେରକ, ସୁନ୍ଦର, ମଧୁର, ଶ୍ରେୟ ଓ ମହତ୍ତ୍ୱର ଜାଗୃତ ମନ୍ତ୍ର ଏବଂ ମାନବିକତାର ପରମାଦର୍ଶ ।”

ଗୋପବନ୍ଧୁଙ୍କ ରଚନାବଳୀଗୁଡ଼ିକରେ ତାଙ୍କ ଜୀବନାନୁଭୂତିର ଜୀବନ୍ତ ପରିପ୍ରକାଶ ଘଟିଥିଲା ତେଣୁ ତାହା ଥିଲା ପ୍ରାଣବନ୍ତ ଏବଂ ସେଗୁଡ଼ିକରେ କବିଙ୍କ ମୌଳିକତା ତଥା ସ୍ୱକୀୟତା ସ୍ପଷ୍ଟ । ସେ ଯାହା ଚିନ୍ତା କରୁଥିଲେ ତାହା ରଚନା କରୁଥିଲେ ଏବଂ କାର୍ଯ୍ୟରେ ପରିଣତ ମଧ୍ୟ କରୁଥିଲେ । ତେଣୁ ଗୋପ ସାହିତ୍ୟରୁ ଗୋପବନ୍ଧୁଙ୍କ ହୃଦୟର ଭାଷା ସ୍ପଷ୍ଟ ପଢ଼ାଯାଇପାରେ । ଗୋପବଂଧୁଙ୍କ ରଚନାବଳୀର ଭାଷା ଯେ କେବଳ ସରଳ ଥିଲା ତାହା ନୁହେଁ ବିଭିନ୍ନ ରସ ବିନ୍ୟାସରେ ମଧ୍ୟ ସେଗୁଡ଼ିକ ଥିଲା ରୁଦ୍ଧିମନ୍ତ; କାରଣ ସ୍ପଷ୍ଟ । ଗୋପବନ୍ଧୁ ସାହିତ୍ୟ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚିବା ଅତି ଆବଶ୍ୟକ ବୋଲି ମନେ କରିଥିଲେ । ଯେଉଁ ରଚନାବଳୀ ସାଧାରଣ ଜନତାଙ୍କ ନିକଟରେ ପହଞ୍ଚିପାରୁ ନାହିଁ, ସେମାନଙ୍କ ବୋଧଗମ୍ୟ ହୋଇପାରୁ ନାହିଁ ତାହାହେଲେ ଯେ ଜାତିର କୌଣସି ଉଦ୍ଦେଶ୍ୟ ସଫଳ ହେବ ନାହିଁ ହୃଦୟଙ୍ଗମ କରିଥିଲେ । “ଲୌକିକ ସାହିତ୍ୟ ବିନା ଜାତୀୟ ଉନ୍ନତି ଅସମ୍ଭବ । ସମାଜର କେତେକ ଉଚ୍ଚ ଶ୍ରେଣୀର ଲୋକେ ସମଗ୍ର ଜାତି ହୋଇଥିଲେ ଲୌକିକ ସାହିତ୍ୟର ପ୍ରୟୋଜନ ହୁଅନ୍ତା ନାହିଁ । ମାତ୍ର ଯେଉଁମାନେ ବିଲରେ ହଳ କରୁଛନ୍ତି, ବଟିଗୃହରେ ପାଣି ଦେଉଛନ୍ତି, ନଈରେ ନାଆ ବାହୁଛନ୍ତି, ଜଙ୍ଗଲରେ କାଠ କାଟୁଛନ୍ତି, ତନ୍ତଶାଳାରେ ଲୁଗା ବୁଣୁଛନ୍ତି, ସେ ଶ୍ରେଣୀର ଅଶିକ୍ଷିତ ବା ଅର୍ଦ୍ଧଶିକ୍ଷିତ ଅସଂଖ୍ୟ ଲୋକସାଧାରଣ ଯେ ଜାତିର ଗର୍ଭ । ଉଚ୍ଚଶ୍ରେଣୀର କେତେକ ଶିକ୍ଷିତ ଲୋକେ ଜାତିର ମସ୍ତିଷ୍କ ହୋଇପାରନ୍ତି । ମାତ୍ର ଏହି ସାଧାରଣଙ୍କ ମଧ୍ୟରେ ଜାତିର ହୃଦୟ, ଜାତିର ଆତ୍ମାର ସ୍ଥାନ । ଏମାନଙ୍କ ପ୍ରାଣରେ ସୌନ୍ଦର୍ଯ୍ୟ ଗ୍ରହଣର ପିପାସା ଅଛି, ଆହ୍ଲାଦ ଆମୋଦର ପ୍ରବୃତ୍ତି ଅଛି, ଉନ୍ନତିର ଆକାଂକ୍ଷା ମଧ୍ୟ ଅଛି । ଏହି ଆକାଂକ୍ଷା ଓ ପ୍ରବୃତ୍ତି ସକଳର ତୃପ୍ତି ନିମନ୍ତେ ସେମାନେ ସାହିତ୍ୟ ଲୋଡ଼ନ୍ତି । ଉପଯୋଗୀ

ସାହିତ୍ୟ ନ ପାଇଲେ ସେମାନଙ୍କ ହୃଦୟର ଭାବ ସକଳ ମରିଯିବ । ନ ହେଲେ ବିପଥରେ ଚାଲିବ । '' ସାଧାରଣଗମ୍ୟ ସାହିତ୍ୟ ବା ଗଣସାହିତ୍ୟକୁ ସେ ଲୌକିକ ସାହିତ୍ୟ ନାମରେ ନାମିତ କରିଥିଲେ ଏବଂ ଏ ମତ ପ୍ରକାଶ କରିଥିଲେ ସତ୍ୟବାଦୀର ଷଷ୍ଠ ବର୍ଷ ପ୍ରଥମ ସଂଖ୍ୟା ସମ୍ପାଦକୀୟରେ ।

ଜାତି ପ୍ରାଣ ଗୋପମାନସ ତାଙ୍କ ସାହିତ୍ୟରେ ପ୍ରତିଫଳିତ ହୋଇଥିଲା । ସର୍ବତୋମୁଖୀ ଉଦ୍ଧ୍ୟାପନ କରି ଜାତିକୁ ବିଶ୍ୱ ଦରବାରରେ ପ୍ରତିଷ୍ଠିତ କରାଇବା ଥିଲା ଗୋପ ସାହିତ୍ୟର ଲକ୍ଷ୍ୟ । ତେବେ ଏହି ଲକ୍ଷ୍ୟ ଏହି ଜାତି ପ୍ରୀତି ବିଶ୍ୱପ୍ରୀତିର ବିରୋଧ ହୋଇ ସହାୟକ ହେବା ଉଚିତ । ଅଧ୍ୟାପକ ନିତ୍ୟାନନ୍ଦ ଶତପଥୀଙ୍କ ଭାଷାରେ "ଜାତିକୁ ଠିକଣା ବାଟ ଦେଖାଇବା ପାଇଁ ଏହି ଜୀବନର ସାହିତ୍ୟ ସାଧନା ଅଭିପ୍ରେତ ଥିଲା । ତେଣୁ ରଚନା ରୀତିଭାବ ପ୍ରତି ଦୃଷ୍ଟି ନଦେଇ ଗୋପବନ୍ଧୁ ନିଜ କାବ୍ୟକ ଶୈଳୀକୁ ନିରୁପମ ଶୈଳୀରେ ଆବୃତ କରିଛନ୍ତି । ପ୍ରଚାରଧର୍ମିତା ଓ ଉଦ୍ଦେଶ୍ୟ-ମୂଳକତା ଭାଷାର ସ୍ୱଚ୍ଛ ପ୍ରବାହ ଭିତରେ ଅବଲୁପ୍ତ ।'' (୪)

ଛାତ୍ର ଜୀବନରୁ ବିଭିନ୍ନ ସମୟରେ ଓ ବିଭିନ୍ନ ପରିପ୍ରେକ୍ଷୀରେ ଲିଖିତ କବିତାଗୁଡିକ ମଧ୍ୟରୁ କେତେକ ଏକତ୍ରିତ ହୋଇ ୧୮୯୨ ରେ "ଅବକାଶ ଚିନ୍ତା'' ପ୍ରକାଶ ପାଇଥିଲା । ତା ପରେ ପ୍ରାୟ ସେଇଦିନଠାରୁ ବନ୍ଦୀଶାଳାର ରୁଦ୍ଧ କୋଠରୀକୁ ନଆସିବା ପର୍ଯ୍ୟନ୍ତ ସାହିତ୍ୟ ସୃଷ୍ଟି ଲାଗି ସେ ଅବକାଶ ପାଇନଥିଲେ କହିଲେ ଚଳେ ।

ତେବେ ଇତିମଧ୍ୟରେ ୧୯୮୭—୧୯୦୭ ମସିହାରେ ପଣ୍ଡିତ ଗୋପବନ୍ଧୁ କେତୋଟି ଜୀବନୀମୂଳକ କବିତା ଲେଖିବାରେ ପ୍ରୟାସୀ ହୋଇ ଉଠିଥିଲେ । ବିଶେଷତଃ ମହାପୁରୁଷମାନଙ୍କ ଜୀବନୀ ଅନୁଧ୍ୟାନ କରିବା ପାଇଁ ସେ ଛାତ୍ର ଜୀବନରୁ ଆଗ୍ରହୀ ହୋଇ ଉଠିଥିଲେ ଓ ଅନେକ ମହାମାନବଙ୍କ ଜୀବନାନୁଭୂତି ତାଙ୍କ ଜୀବନରେ ବିଭିନ୍ନ ପ୍ରକାରର ପ୍ରଭାବ

---

(୪) ଗୋପବନ୍ଧୁ ସ୍ମରଣିକା (୧୯୬୭)—ପୃ ୧୧୨

ପକାଇଥିଲା । ମ୍ୟାଜିନି, ଗାଲିବାଲ୍ଡିଙ୍କ ବୈପ୍ଳବିକ ଜୀବନୀ କାହାଣୀ ପଢ଼ି ଓ ଆଲୋଚନା କରି ତାଙ୍କ ମନ ପ୍ରଦୀପ୍ତ ହୋଇ ଉଠୁଥିଲା । ପୁନଶ୍ଚ ଗୋପବନ୍ଧୁ ଧାରଣା କରିଥିଲେ ସୁପ୍ତପ୍ରାୟ ଉତ୍କଳୀୟ ଜନମାନସକୁ ଜାଗ୍ରତ କରିବାକୁ ହେଲେ, ଏ ମାଟିର ଅତୀତ ଐତିହ୍ୟ ତଥା ମହାପୁରୁଷ-ମାନଙ୍କର ବିସ୍ମୃତପ୍ରାୟ ପଦଚିହ୍ନଗୁଡ଼ିକୁ ସ୍ପଷ୍ଟ କରି ଦେଖାଇ ଦେବା ସଙ୍ଗେ ସଙ୍ଗେ ପୂର୍ବକୀର୍ତ୍ତି, ପୂର୍ବ ଗୌରବଗୁଡ଼ିକ ମହାପୁରୁଷଙ୍କ ଜୀବନ ସହ କିପରି ମିଶିରହିଥିଲା ଯେଗୁଡ଼ିକୁ ପୁଣି ଜନମାନସ ସମ୍ମୁଖକୁ ନୂତନ ରୂପରେ ଆଣିବାକୁ ହେବ । ଗୋପବନ୍ଧୁ ତେଣୁ ଯଥାର୍ଥରେ ମନେ କରିଥିଲେ "ମହାପୁରୁଷର ଚରିତ ଶ୍ମଶାନ", "ଦେଶର ଜାତିର ଗୌରବଗାନ" ଏବଂ ସେହିମାନେ "ପୁଣ୍ୟ ଜନମାଟି ପୁଣ୍ୟ ଦେବାଳୟ", "ଉଦ୍ଧରିବା ପାଇଁ କଲେ ତନୁକ୍ଷୟ" ସେଇଠି ହିଁ ଜୀବନର ପରମ ସଫଳତା—ତାହାହିଁ ମାନବ ଜୀବନକୁ ଉତ୍ତମ ମାର୍ଗରେ ପରିଚାଳିତ କରିବା ପାଇଁ ଏକମାତ୍ର ପଥ । ସେଇଲାଗି ଆମ ମହାପୁରୁଷମାନଙ୍କ ଚରିତ୍ର କେବଳ ନୁହ; ଭାରତୀୟ ତଥା ପାଶ୍ଚାତ୍ୟ ବୀରମାନଙ୍କ ଜୀବନ କାହାଣୀ ସମସ୍ତ ନିଷ୍ଠାର ସହିତ ପାଠ କରିବା ସଙ୍ଗେ ସଙ୍ଗେ କେତୋଟି ଜୀବନୀମୂଳକ କବିତା ଲେଖିଥିଲେ । ଯେଉଁ ସ୍ମରଣୀୟ ବ୍ୟକ୍ତିତ୍ୱଗୁଡ଼ିକ ଗୋପବନ୍ଧୁଙ୍କ କଲମ ମୁନରେ ରୂପ ପାଇଥିଲେ ସେମାନେ ହେଲେ ଭକ୍ତକବି ଜଗନ୍ନାଥ ଦାସ, ସାମନ୍ତ ଚନ୍ଦ୍ରଶେଖର, ସାରଳା ଦାସ, ବଳରାମ ଦାସ, ଉପେନ୍ଦ୍ର ଭଞ୍ଜ, ଶମ୍ଭୁକର ବାଜପେୟୀ, ଅନଙ୍ଗଭୀମ ଦେବ, ପୁରୁଷୋତ୍ତମ ଦେବ ଓ ସ୍ୱର୍ଗୀୟ ପଣ୍ଡିତ ହରିହର ଦାଶ ଶର୍ମା ।

ସେଇ ୧୯୦୭ ମସିହାରେ ନୂତନ କରି ସାହିତ୍ୟ ପତ୍ରିକା ମୁକୁର ସ୍ୱର୍ଗୀୟ ବ୍ରଜସୁନ୍ଦର ଦାଶଙ୍କ ସମ୍ପାଦନାରେ ପ୍ରକାଶ ପାଇବା ଆରମ୍ଭ ହୋଇଥିଲା । ତାହା ଗୋପବନ୍ଧୁଙ୍କ ଚିନ୍ତାଧାରାର ପ୍ରକାଶ ପାଇଁ ଥିଲା ଆଉ ଏକ ଅପୂର୍ବ ସୁଯୋଗ । ୧୯୦୭ ମସିହା ଅପ୍ରେଲ ମାସଠାରୁ ଅକ୍ଟୋବର ମାସ ପର୍ଯ୍ୟନ୍ତ ପ୍ରତ୍ୟେକ ମାସରେ କ୍ରମାନ୍ୱୟରେ ଉକ୍ତ ଜୀବନୀମୂଳକ କବିତାଗୁଡ଼ିକ ପ୍ରକାଶ ପାଇଥିଲା । କବିତା ପୁରୁଷୋତ୍ତମ ଦେବ ମାର୍ଚ୍ଚ ୧୯୦୭ ରେ ପ୍ରକାଶ ପାଇଥିଲା ଓ ହରିହର ଦାଶ ଶର୍ମାଙ୍କ ଜୀବନୀମୂଳକ କବିତା ପ୍ରକାଶିତ ହୋଇ ନଥିଲା ।

୧୯୨୩ ଜାନୁୟାରୀରେ ହଜାରୀବାଗ୍ ଜେଲ୍‌ରେ ରାଜନୈତିକ ବନ୍ଦୀଭାବରେ କାଳଯାପନ କରିବାବେଳେ ସୁପ୍ତ ସାହିତ୍ୟିକ ଚେତନା ତାଙ୍କର ଜାଗ୍ରତ ହୋଇଥିଲା ଏବଂ ସେଇ ଦୁଇ ବର୍ଷର ଅବଧି ମଧ୍ୟରେ ସେ ରଚନା କରିଥିଲେ କାରା କବିତା, ବନ୍ଦୀର ଆତ୍ମକଥା ଓ ଧର୍ମପଦ। ପର ଜୀବନରେ ନଚିକେତା ଉପାଖ୍ୟାନ ଓ ବ୍ରହ୍ମତତ୍ତ୍ୱ ରଚନା କରିଥିଲେ। ତାଙ୍କ ରଚନାବଳୀଗୁଡ଼ିକରେ ରାଜନୈତିକ, ଅର୍ଥନୈତିକ ତଥା ସାମାଜିକ ସମସ୍ୟାଗୁଡ଼ିକର ପରିପ୍ରେକ୍ଷରେ ଥିବା ସଙ୍ଗେ ସଙ୍ଗେ ଥିଲା ଚରିତ୍ର ଗଠନ, ମନୁଷ୍ୟତା, ବ୍ୟକ୍ତିତ୍ୱର ବିକାଶ, ପ୍ରକୃତି ବର୍ଣ୍ଣନା, ବନ୍ଧୁ ତଥା ବିଶ୍ୱପ୍ରୀତିର ଧାରା ଓ ମାନବ ଜାତିର ଅଭାବ ଅନାଟନର ମର୍ମନ୍ତୁଦ କାହାଣୀ, ସାଧାରଣ ଜୀବନର ଇତିହାସ। ଡକ୍ଟର ହରେକୃଷ୍ଣ ମହତାବଙ୍କ ଭାଷାରେ "ଗୋପବନ୍ଧୁଙ୍କ ବିଶେଷତ୍ୱ ହେଉଛି ଏହି ଯେ ନିଜେ ନିଜକୁ ସମାଜର ସବୁଠାରୁ ଯେ ତଳେ ପଡିଛି ତାହା ସହିତ ମିଶେଇ ଦେଇଥିଲେ × × × ତାଙ୍କର ବିଶେଷତ୍ୱ ଥିଲା ତାଙ୍କର ହୃଦୟ। ତାଙ୍କ କଲମରୁ ଯେଉଁ ସମ୍ବନ୍ଧରେ ଯେ କୌଣସି ଲେଖା ବାହାରୁଥିଲା ତାହା କବିତା ହେଉ, ପ୍ରବନ୍ଧ ହେଉ ବା ସମ୍ବାଦପତ୍ରର ସମ୍ପାଦକୀୟ ହେଉ, ସବୁଥିରେ ହୃଦୟ ଅଜାଡ ହୋଇ ପଡିଥିଲା। ତାଙ୍କର ବକ୍ତୃତା ଓ ସ୍ୱରରେ ମଧ୍ୟ ତାଙ୍କର ହୃଦୟ ହିଁ ବେଶି ପ୍ରକାଶ ପାଉଥିଲା।" (୫)

ବୋଧହୁଏ ତାହାହିଁ ଥିଲା ପ୍ରଥମ କାରଣ ଯେଉଁଥିପାଇଁ ଗୋପ ସାହିତ୍ୟ ଥିଲା ପ୍ରାଣସ୍ପର୍ଶୀ। ଯେ କୌଣସି ଲୋକର ହୃଦୟରେ ନିଜର ଆସନ ବିଜାୟ ରଖି ପାରିବାର ସାମର୍ଥ୍ୟ ସେ ରଚନାବଳୀରେ ଥିଲା ଯଦିଓ ସେଥିରେ କଳ୍ପନାବିଳାସ ଅପେକ୍ଷା ଆଦର୍ଶର ପ୍ରତୁଳ ପରିପ୍ରକାଶ। ତାହାହିଁ ତ ଗୋପ ସାହିତ୍ୟର ମୌଳିକତା, ତାହାହିଁ ତ ବୈଶିଷ୍ଟ୍ୟ। କି ସୁନ୍ଦର, ସରଳ, ସାବଲୀଳ ଭାଷା ! ସମସ୍ତଙ୍କର ହୃଦୟଗ୍ରାହୀ, ସବୁ ଯେପରି ପ୍ରାଣସ୍ପର୍ଶୀ। କେବଳ ସରଳ ଭାଷା କାହିଁକି ରସବିନ୍ୟାସ ଓ ଅଳଙ୍କାର ସଂଯୋଜନା ମଧ୍ୟ ସୁନ୍ଦର। ତାର ଏକମାତ୍ର କାରଣ ଥିଲା କବିଥିଲେ ପ୍ରଧାନତଃ ମାନବତାବାଦୀ ଓ ଜୀବନାନୁଭୂତିର ଆଲେଖ୍ୟ ଥିଲା ତାଙ୍କ

(୫) ଗୋପବନ୍ଧୁ ସ୍ମରଣିକା (୧୯୬୭) ସ ନୃତ୍ୟମୂର୍ଜ୍ଜା ସମ୍ପଦ—ପୃ ୧୪

ସୃଷ୍ଟିର ପ୍ରାଣ ପ୍ରକଟିତ ହୋଇଥିଲା । ଡ଼ା. ନରେନ୍ଦ୍ରନାଥ ମିଶ୍ରଙ୍କ ଭାଷାରେ "ମନୁଷ୍ୟତ୍ୱର୍ବ ତାଙ୍କଠାରେ ସବୁକଣ୍ଠର ମାପକାଠି ଥିଲା । ମନୁଷ୍ୟର ଅନ୍ତଃ ପ୍ରକୃତିର ସମୃଦ୍ଧିର ସର୍ବମସ୍ୱରୂପ ସେ ସ୍ୱଦେଶର ପ୍ରତି ଧୂଳିକଣାରେ ମଧ୍ୟ ଦେଖି ପାରୁଥିଲେ । କାଠଯୋଡ଼ୀ ମହାନଦୀ କୂଳରେ, ପ୍ରକୃତିର ବିଜନତାରେ ଅଥବା କାରାଗାରର ନିଭୃତ ଶଯ୍ୟାରେ କବି ସର୍ବଦା ମାନବତାର ଧ୍ୟାନ କରିଛନ୍ତି ।" ତାଙ୍କ ମତରେ "ଗୋପବନ୍ଧୁଙ୍କ ସୃଷ୍ଟି ଧର୍ମମୂଳରେ ଥିଲା ଦୁଇଟି ମୁଖ୍ୟ ବିଭାଗ—ବିଷାଦ ଭାବ ଓ ପ୍ରଣୟ ଚେତନା । ବୁଦ୍ଧଦେବଙ୍କ ଭଳି ଜୀବନର ଦୁଃଖ ଦେଖି ସେ ନିର୍ବାଣ କାମନା କରୁନଥିଲେ । ଦାର୍ଶନିକ ସୋପେନ୍‌ହୋରଙ୍କ ଭଳି ଈଶ୍ୱରଙ୍କ ଖିଆଲି ସୃଷ୍ଟିର ଅସାମଞ୍ଜସ୍ୟ କଥା ଭାବି ଶୋକର ବିହ୍ୱଳତାରେ ଆତ୍ମହତ୍ୟାର ସମର୍ଥନ କରୁନଥିଲେ । ଦୁଃଖ ଓ ବିପଦ ତାଙ୍କୁ ନବ ନବ କର୍ମ ପ୍ରୟାସରେ ଉଦ୍‌ବୁଦ୍ଧ କରିଥିଲା, ତାଙ୍କର ପ୍ରେମ ଦୃଷ୍ଟି ପ୍ରସାରିତ କରୁଥିଲା । ବୃହତ୍ତର ଅର୍ଥରେ ତାଂକର ଜୀବନ ଓ ବାକ୍ୟଥିଲା ସର୍ବତୋମୁଖୀ ପ୍ରେମର ଏକ ଭାଷ୍ୟ ।" (୬)



(୭) ସମାଜ ଜନ୍ମଦିନ ସଂଖ୍ୟା (୧୯୭୩)—ପୃ ୩୬

॥ ଏଗାର ॥

# ମିଶୁ ମୋର ଦେହ ଏ ଦେଶ ମାଟିରେ

ଯେଉଁଦିନ ପଣ୍ଡିତ ଗୋପବନ୍ଧୁଙ୍କ ଜେଲ୍‌ଦଣ୍ଡର ମିଆଦ ଶେଷ ହେବା ପରେ କଟକ ଫେରି ଆସିବାର ଥିଲା ସେଦିନ ସାରା କଟକ ସହରରେ ଆନନ୍ଦ ଉତ୍ସବର ବନ୍ୟା । ରେଳଷ୍ଟେସନରେ ତାହାଙ୍କୁ ସ୍ୱାଗତ ଜଣାଇବା ଲାଗି ଅଗଣିତ ନରନାରୀଙ୍କ ଅପୂର୍ବ ସମାବେଶ । କି ଉନ୍ମାଦନା ଲୋକମାନଙ୍କ ମଧ୍ୟରେ ! ସେମାନଙ୍କ ମନରେ କି ଉତ୍ତେଜନା !!

୧୯୨୪ ମସିହା ଜୁନ୍ ମାସ ୨୬ ତାରିଖ । ବର୍ଷାଋତୁ ଆରମ୍ଭ ହୋଇଯାଇଥାଏ ପ୍ରାୟ । ଗୋପବନ୍ଧୁଙ୍କ ଜେଲ୍ ଜୀବନର ମିଆଦ ଶେଷ ହେବା ପରେ ପରେ ତାହାଙ୍କୁ ହଜାରିବାଗ୍ ଜେଲ୍‌ରୁ ଖଲାସ କରି ଦିଆଯାଇଥିଲା । ସେଇଠୁ ରେଳଯୋଗେ ସେ ଆସିଥିଲେ କଟକ ।

କଟକ ରେଳଷ୍ଟେସନରେ ତିଳଟିଏ ପଡ଼ିବା ପାଇଁ ମଧ୍ୟ ସ୍ଥାନ ନଥିଲା । ପ୍ରବଳ ଜନସମାଗମ । ସମସ୍ତଙ୍କର ଗୋଟାଏ ଦିଗକୁ ଲକ୍ଷ୍ୟ— ଏକ୍‌ସପ୍ରେସ୍ ଗାଡ଼ି କେତେବେଳେ ଆସିବ । ଗାଡ଼ି ଆସିବାର ସଙ୍କେତ ଯେମିତି ମିଳିଥିଲା ଉପସ୍ଥିତ ଲୋକଙ୍କ ଉତ୍କଣ୍ଠା ବହୁତ ବଢ଼ିଯାଇଥିଲା । ଗାଡ଼ି ଷ୍ଟେସନକୁ ଦେଖାଯିବା ସଙ୍ଗେ ସଙ୍ଗେ ଆରମ୍ଭ ହୋଇଗଲା ଧ୍ୱନି "ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜୟ, ମହାତ୍ମା ଗାନ୍ଧିଙ୍କ ଜୟ"...... ।

ଏକ୍‌ସପ୍ରେସ୍ ଗାଡ଼ି ଆସି କଟକ ଷ୍ଟେସନରେ ଠିଆ ହୋଇଯାଇଥିଲା । ଓଡ଼ିଶାର ଦୀନ ଦରିଦ୍ର ଜନତାର ବନ୍ଧୁ ଗୋପବନ୍ଧୁ ଗାଡ଼ିର ଗୋଟିଏ କମ୍ପାର୍ଟମେଣ୍ଟର ଦୁଆର ନିକଟରେ ଠିଆ ହୋଇଥିଲେ । ଆଖିରୁ ତାଙ୍କର ଧାର ଧାର ଲୁହ ଗଡ଼ି ପଡ଼ୁଥିଲା । ଜନସମୁଦ୍ର ଉଦ୍‌ବେଳିତ ହୋଇ ଉଠିଥିଲା । ଭାରତମାତାର ଜୟଗାନ କରିବା ସଙ୍ଗେ ସଙ୍ଗେ

ଗୋପବନ୍ଧୁ ଏବଂ ମହାତ୍ମାଗାନ୍ଧୀଙ୍କ ଜୟଗାନରେ ଆକାଶ ପାତାଳ ପ୍ରକମ୍ପିତ ହୋଇଥିଲା । ଜନତା ଅନୁଭବ କରିଥିଲା ତାର ପ୍ରିୟ, ତାର ଅତି ଆପଣାର ହଜିଲା ମଣିଷକୁ ଅତି ନିକଟରେ ପାଇଛୁ । ଆଜି ହରାଇବାର ନୁହେଁ । ସେ ପ୍ରକାର ଜନସମାବେଶ ପାଇଁ କେହି ଆଗରୁ ବ୍ୟବସ୍ଥା କରିନଥିଲା; କେହି ଆହ୍ୱାନ ଦେଇନଥିଲା । ସେ ଜନତା ଆପେ ଆପେ ଠୁଳ ହୋଇଥିଲେ ସେଇଠି ।

କଟକ ମୁନିସିପାଲିଟି ତରଫରୁ ମଧ୍ୟ ସମ୍ବର୍ଦ୍ଧନା ଦେବା ପାଇଁ ବ୍ୟବସ୍ଥା ହୋଇଥିଲା । ବଗିଟ ପଟୁଆର ଭିତରେ ତାହାଙ୍କୁ ନିଆଯାଇଥିଲା କଟକର ସ୍ୱରାଜ୍ୟ ଆଶ୍ରମ ଆଡ଼କୁ । ଜେଲ୍‌ରୁ ଖଲାସ ହେବାପରେ କଟକରେ ରହିଲେ ଦୁଇଦିନ । ତା ପରେ ପୁରୀ । ସେଇଠି ରହିଲେ ତିନିଦିନ । ତା ପରେ ତାଙ୍କର ପ୍ରିୟ କର୍ମକେନ୍ଦ୍ର ସତ୍ୟବାଦୀ । ସଙ୍ଗେ ସଙ୍ଗେ ଗ୍ରୁଇପରି ରାମଚନ୍ଦ୍ର; ତାଙ୍କ ଅନୁଚର । ଦିନେ ଦୁଇଦିନର ରହଣି ପରେ ଚାଲିଲେ ସମ୍ବଲପୁର ।

ହଜାରିବାଗ କାରାଗାରରୁ ମୁକ୍ତି ପାଇ ଯେଉଁଦିନ କଟକରେ ପାଦ ଦେଇଥିଲେ, ସେତେବେଳେ ଜାତୀୟ କଂଗ୍ରେସର ପ୍ରାଦେଶିକ ଅଧିବେଶନ ଚାଲିଥିଲା କଟକଠାରେ । ସେଥିରେ ସଭାପତିତ୍ୱ କରୁଥିଲେ ବଙ୍ଗଳାର ବରିଷ୍ଠ କଂଗ୍ରେସକର୍ମୀ ଶ୍ରୀଯୁକ୍ତ ପ୍ରଫୁଲ୍ଲଚନ୍ଦ୍ର ରାୟ । ଗୋପବନ୍ଧୁ ଯାଇ ସଭାସ୍ଥଳରେ ପହଞ୍ଚିବାକ୍ଷଣି ସେ ତାହାଙ୍କୁ "ଉତ୍କଳମଣି" ବୋଲି ସମ୍ବୋଧନ କରିଥିଲେ ଏବଂ ଉପଯୁକ୍ତ ସମ୍ମାନ ମଧ୍ୟ ଦେଇଥିଲେ । ସେହିଦିନଠାରୁ "ଉତ୍କଳମଣି" ଉପାଧି ଗୋପବନ୍ଧୁଙ୍କ ନାମ ସହିତ ଯୋଡ଼ି ହୋଇ ଯାଇଥିଲା ।

ଦରିଦ୍ର, ଦଳିତ, ନିଷ୍ପେଷିତ ଜନତାର ପରମବନ୍ଧୁ ପ୍ରକୃତରେ ଉତ୍କଳରମଣି ଗୋପବନ୍ଧୁ ହଜାରିବାଗ୍ ଜେଲ୍‌ରୁ ମୁକ୍ତିପାଇ ଆସିବା ପରେ ପରେ ୧୯୨୫ ମସିହାରେ ପୁରୀ ଜିଲ୍ଲାର ବନ୍ୟାଦୁର୍ଗତ ଅଞ୍ଚଳଗୁଡ଼ିକର ଲୋକଙ୍କ ପାଇଁ ନିଜକୁ ହଜେଇ ଦେଇଥିଲେ । ସେ ମନେ କରୁଥିଲେ ଅମୃତର ସନ୍ତାନ ମଣିଷ ଜାତି ଭଗବାନଙ୍କ ସୃଷ୍ଟି । ସେଥିପାଇଁ

ଗୋପବନ୍ଧୁ ମତବ୍ୟକ୍ତ କରିଥିଲେ ଜାତି ଜାତି ଭିତରେ କୌଣସି ଭେଦଭାବର ପ୍ରଶ୍ନ ନାହିଁ । "ଯେ ଯେଉଁଜାତିର ହୁଅନ୍ତୁ ସେ ସର୍ବପ୍ରଥମେ ମନୁଷ୍ୟ ଈଶ୍ୱରଙ୍କର ସନ୍ତାନ । ତେଣୁ ଯିଏ ନିଜକୁ ଈଶ୍ୱରଙ୍କ ସନ୍ତାନ ବୋଲି ମନେକରେ, ଏ ସୃଷ୍ଟିର ଶ୍ରେଷ୍ଠ ଜୀବ ବୋଲି ମନେକରେ ସେ ଅନ୍ୟ ସବୁ ମଣିଷକୁ ଭ୍ରାତୃତ୍ୱର ବନ୍ଧନ ଭିତରେ ବାନ୍ଧି ରଖିବାକୁ ଚେଷ୍ଟିତ ହୁଏ, ଅନ୍ୟମାନଙ୍କୁ ଘୃଣା କରିବା ପରିବର୍ତ୍ତେ ଏକ ଆତ୍ମୀୟତାର ସମ୍ପର୍କ ରକ୍ଷା ଲାଗି, ସ୍ନେହସହାନୁଭୂତି-ଶ୍ରଦ୍ଧାଶୀଳ ହେବାକୁ ନିଜ ମନକୁ ସଂଗୃହୀତ କରିଥାଏ ଏବଂ ପରିଣାମତଃ ସମଗ୍ର ପୃଥିବୀ ତାର ନିଜର ବୋଲି ମନେହୁଏ । ସବୁ ମଣିଷ ତାର ଆତ୍ମୀୟ ମନେ ହୁଅନ୍ତି । ଅନ୍ୟଲୋକର ଦୁଃଖ ଦେଖିଲେ ସେ ନିଜେ ଦୁଃଖୀ ହୋଇଯାଏ, ଅନ୍ୟର ଆନନ୍ଦରେ ତାର ମନ ପୁଲକିତ ହୋଇଉଠେ । ମଣିଷକୁ କେବଳ ଜଣେ ମଣିଷ ବ୍ୟକ୍ତି ଆଉ ଅନ୍ୟ କିଛି ବୋଲି ସେ ମନେ ପରିପାରେନା । ସେ ନିଜେ ଯେମିତି ଈଶ୍ୱରଙ୍କ ସନ୍ତାନ ସମସ୍ତେ ସେମିତି ଈଶ୍ୱରଙ୍କ ସନ୍ତାନ ଭଳି ବଞ୍ଚିରହନ୍ତୁ ବୋଲି ଇଚ୍ଛାକରେ । ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନରେ ହୁଏତ ତାହାହିଁ ହୋଇଥିଲା । ସେ ନିଜେ ମନେ କରୁଥିଲେ ସେ ଅମୃତର ସନ୍ତାନ । ସେ ଈଶ୍ୱରଙ୍କ ସନ୍ତାନ ଏବଂ ଏ ପୃଥିବୀର ସୃଷ୍ଟି ମୂଳରେ ହିଁ ଈଶ୍ୱର ଅଛନ୍ତି । ଏଠି ତାଙ୍କ ନିଜଭଳି ସମସ୍ତ ମଣିଷ ଭଗବାନଙ୍କ ସୃଷ୍ଟି । କେବଳ ହୁଏତ ସେଇକାରଣରୁ ସାଧାରଣ ମଣିଷମାନଙ୍କ ପ୍ରତି ସମ୍ବେଦନ-ଶୀଳତା ମଣିଷର ମନ ଓ ହୃଦୟକୁ ଛୁଇଁ ପାରିଥିଲା । ସେଇଥିପାଇଁ ସାଧାରଣ ଜନତାର ଦୁଃଖରେ ସେ ବିଗଳିତ ହୋଇପଡ଼ୁଥିଲେ । ଅଧରାତିରେ ଏକାକୀ ଶୋଇଥିଲାବେଳେ ବି ସେଇମାନଙ୍କର କରୁଣ ଦୃଶ୍ୟ ତାଙ୍କ ଆଖି ଆଗରେ ନାଚିଉଠୁଥିଲା ଓ ଛୋଟ ପିଲାଙ୍କ ଭଳି ବଡ଼ ପାଟିରେ ଅନେକ ସମୟରେ କାନ୍ଦିବା ଆରମ୍ଭ କରିଦେଉଥିଲେ କେବଳ ସେଇଥିପାଇଁ ।

ସ୍ୱର୍ଗତ ଦୀନବନ୍ଧୁ ସି. ଏଫ୍. ଆଣ୍ଡ୍ରୁଜ୍ ଓଡ଼ିଶା ଆସିଥିଲେ ଗୋପବନ୍ଧୁ ବାବୁଙ୍କ ଅନୁରୋଧ ରକ୍ଷାକରି । ଉଦ୍ଦେଶ୍ୟ ଥିଲା ପୁରୀ ଜିଲ୍ଲାର ଭାର୍ଗବୀ ନଦୀରେ ହୋଇଥିବା ବନ୍ୟା ଦୁର୍ଗତ ଅଞ୍ଚଳର ଲୋକଙ୍କର କରୁଣ ଅବସ୍ଥା

ଦେଖିବେ । ୧୯୨୫ ମସିହା ଅକ୍ଟୋବର ମାସର ସାତ ଓ ଆଠ ଦୁଇଟି ଦିନ ଦୁଃସ୍ଥ ଜନତାଙ୍କର ଗହଣରେ ସେ ଅତିବାହିତ କରିଥିଲେ । ସେତେବେଳେ ଭାର୍ଗବୀ ନଦୀରେ ପ୍ରବଳ ବନ୍ୟା । ଆଖପାଖ ଅଞ୍ଚଳ ପାଣିରେ ମୂର୍କୁମୂର ବୁଡ଼ି ରହିଥିଲା କହିଲେ ଚଳେ । ତଥାପି ଗୋପବନ୍ଧୁଙ୍କ ସହିତ ଆଣ୍ଡ୍ରୁଜ୍ ଅନେକ ବନ୍ୟାଞ୍ଚଳ ବୁଲିବାକୁ ପ୍ରବଳ ଆଗ୍ରହ ପ୍ରକାଶ କରିଥିଲେ । ଉଭୟେ ଚନ୍ଦନପୁର ଯାଇ ଯାଇ ବର୍ଷାରେ କାଦୁଅ ହୋଇଥିବା ରାସ୍ତାସହ ଅନଭ୍ୟସ୍ତ ଆଣ୍ଡ୍ରୁଜ୍ ସାହେବ ଗୋଡ଼ଖସି ଦୁଇଥର କଚଡ଼ାଏ ଖାଇଥିଲେ । ଆଉ ଥରେ ସେମିତି ଢଙ୍ଗାରେ ଯାଇ ଯାଉ ସେ ଢଙ୍ଗା ବି ଓଲଟି ପଡ଼ିଥିଲା । ତଥାପି ସେମାନେ ସାଧ୍ୟମତେ ଅନେକ ଅଞ୍ଚଳ ବୁଲି ଦେଖିଥିଲେ । ଅନେକ ଲୋକଙ୍କ ଜୀବନର ମର୍ମନ୍ତୁଦ କାହାଣୀ ଶୁଣିଥିଲେ । ସେ ଦୃଶ୍ୟ ସବୁ ଗୋପବନ୍ଧୁଙ୍କ ପାଇଁ ନୂତନ ନଥିଲା; ହୁଏତ ଥିଲା ଆଣ୍ଡ୍ରୁଜ୍‌ଙ୍କ ପାଇଁ । ଆଠ ତାରିଖ ସନ୍ଧ୍ୟାରେ ଉଭୟେ ଫେରିଆସି ଗୋଟିଏ ଗ୍ରାମ ସତ୍ୟବାଦୀର ବକୁଳ ବନ ଭିତରେ ବିତାଇଥିଲେ ।

ତା ପରଦିନ ସକାଳୁ ଉଠି ସେତେବେଳେ ଗଲା ଦୁଇ ଦିନର ବିଭିନ୍ନ ଦୃଶ୍ୟ ପର୍ଯ୍ୟାଲୋଚନା କରୁଥିଲେ ଗୋପବନ୍ଧୁଙ୍କ ଆଖିରୁ ଧାର ଧାର ହୋଇ ଲୁହ ଗଡ଼ି ଯାଇଥିଲା । ପ୍ରାଣ ତାଙ୍କର ସତେ ସେମିତି ନିଃସ୍ୱ ଜନତା ଲାଗି ବିଗଳିତ ହୋଇ ଉଠିଥିଲା । ଆଉ ତ କିଛି କରିବାର ନଥିଲା । ସର୍ବନିୟନ୍ତା ଭଗବାନଙ୍କୁ ଉଭୟେ ଏକାଗ୍ରଭାବେ ବସି ପ୍ରାର୍ଥନା କଲେ କିଛି ସମୟ ପାଇଁ । ସେମାନଙ୍କ ପ୍ରାର୍ଥନା ହୁଏତ ଥିଲା "ହେ ଭଗବାନ ! ଏମାନେ ତମର ସୃଷ୍ଟି, ତୁମେ ହିଁ ସେମାନଙ୍କ ରକ୍ଷକର୍ତ୍ତା । ତୁମର ଦୟା ଉପରେ ଆଶ୍ରୟ କରି, ତୁମର କରୁଣାକୁ ସମ୍ବଳ କରି ଏମାନେ ବଞ୍ଚିଛନ୍ତି । ଏ ନିଃସ୍ୱ ଜନତାକୁ ତୁମେ କଣ ସେତିକ ଦେବନି ଭଗବାନ ?"

ଦରିଦ୍ର, ନିଃସ୍ୱ, ନିପୀଡ଼ିତ ବନ୍ୟା ଉପଦ୍ରୁତ ଅଞ୍ଚଳର ଲୋକମାନଙ୍କ ଲାଗି ଗୋପବନ୍ଧୁଙ୍କର ସେ କରୁଣଭାବ, ସେ ଅନୁକମ୍ପା ଆଣ୍ଡ୍ରୁଜ୍‌ଙ୍କର ହୃଦୟରେ ଏକ ଅଳିଭା ଦାଗ ଟାଣି ଦେଇଥିଲା । ସେ ମୁହୂର୍ତ୍ତକ ପାଇଁ ନିର୍ବାକ୍, ନିସ୍ପନ୍ଦ ହୋଇ ପଡ଼ିଥିଲେ ।

ଅକ୍ଟୋବର ସାତ ତାରିଖ ରାତ୍ରରେ ଏକ ବନ୍ୟା ଦୁର୍ଗତ ଅଞ୍ଚଳ ବାସୁଦେବପୁର ଯାଇଥିଲେ ଗୋପବନ୍ଧୁ ଓ ଆଣ୍ଡ୍ରୁଜ୍ ସାହେବ । ସେଦିନ ମଧ୍ୟ ଆକାଶ ମେଘାଚ୍ଛନ୍ନ ଥିଲା । ବେଳେ ବେଳେ ପ୍ରବଳ ବର୍ଷା ମଧ୍ୟ ହେଉଥିଲା । ସେଦିନର ସେହି ବର୍ଷଣମୁଖର ରାତ୍ରରେ ଉଭୟେ ଏକ ଗୃହୀଙ୍କ ଘରେ ରହିବାକୁ ବାଧ୍ୟ ହୋଇଥିଲେ । ଓଡ଼ିଶାରୁ ଫେରିଯିବା ପରେ ସେହି ରାତିର ସ୍ମୃତି ସମ୍ପର୍କରେ ଆଣ୍ଡ୍ରୁଜ୍ ଅନେକ କଥା ଲେଖିଥିଲେ ଏବଂ ଲେଖିଥିଲେ ଯେ ସେହି ସାତ ତାରିଖ ରାତିଟି ସେ କସ୍ମିନ୍‌କାଳେ ଭୁଲିପାରିବେ ନାହିଁ । ସେଥିରେ ସେ ଲେଖିଥିଲେ—"The night was a memorable one for me x x x Gopabandhu's endurance was quite inexhaustible. His pity for the villagers, children, the poor women the dumb cattle, all continually won his sympathy and love." (୧) ଗୋପବନ୍ଧୁ ଗୁଣିଜନମାନଙ୍କ ପାଇଁ କଠିନତମ କଷ୍ଟ ସହ୍ୟ କରିବାକୁ ମଧ୍ୟ କଦାପି ପଶ୍ଚାତ୍‌ପଦ ନଥିଲେ । ଆବାଳବୃଦ୍ଧବନିତା, ଏପରିକି ପଶୁପକ୍ଷୀମାନଙ୍କ ପରି ମୂକମାନଙ୍କ ପ୍ରତି ମଧ୍ୟ ତାଙ୍କର ଅବର୍ଣ୍ଣନୀୟ ଅନୁକମ୍ପା ତାଙ୍କୁ ସମାଜରେ ଅତ୍ୟନ୍ତ ସ୍ନେହଭାଜନ ଓ ଆପଣାର କରି-ପାରିଥିଲା । ତାଙ୍କ ପାଖରେ ମଣିଷ ମାତ୍ରେ ଥିଲା ଗୋଟିଏ ଜାତି । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍ ଭିତରେ ତଫାତ୍ କିଛି ନଥିଲା । ୧୯୨୬ ମସିହାରେ ଭଦ୍ରଖରେ ଆରମ୍ଭ ହୋଇଥିବା ଏକ ସାମ୍ପ୍ରଦାୟିକ ହଙ୍ଗାମାକୁ ସମାଧାନ କରିବା ପାଇଁ ମୁସଲମାନ ସମ୍ପ୍ରଦାୟର ଲୋକମାନେ ପଣ୍ଡିତ ଗୋପବନ୍ଧୁଙ୍କ ଏକାନ୍ତ ସାହାଯ୍ୟ କାମନା କରିଥିଲେ ।

ସେତେବେଳକୁ 'ସମାଜ' ପ୍ରେସ ସତ୍ୟବାଦୀରୁ ପୁରୀକୁ ସ୍ଥାନାନ୍ତରିତ ହୋଇଥିଲା । ଗୋପବନ୍ଧୁ ସେଥିପାଇଁ ପ୍ରାୟତଃ ପୁରୀରେ ହିଁ ରହୁଥିଲେ । ସେଇ ସମୟରେ ଭଦ୍ରଖରେ ଏକ ବଡ଼ ରକମର ହିନ୍ଦୁ ମୁସଲମାନ ସାମ୍ପ୍ରଦାୟିକ ବିଦ୍ୱେଷଭାବର ଆରମ୍ଭ ହୋଇ ଉତ୍କଟ ଆକାର ଧାରଣ କରିଥିଲା । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବଙ୍କ ଖାତିର ଖୁବ୍ ଥିଲା । ସାରା

---

(୧) ସମାଜ ସ୍ୱତନ୍ତ୍ର ସଂଖ୍ୟା ୧୯୬୯—ପୃ ୧୭

ବାଲେଶ୍ୱର ଜିଲ୍ଲାରେ । ଗୋରା ହାକିମଙ୍କଠାରୁ ଆରମ୍ଭ କରି ଅନ୍ୟମାନେ ମଧ୍ୟ ତାଙ୍କୁ ବେଶ୍ ଖାତିର କରୁଥିଲେ । ସେହି ସୁଯୋଗ ନେଇ ହିନ୍ଦୁମାନଙ୍କୁ ସାହାଯ୍ୟ କରି ସେ ମୁସଲମାନ ସମ୍ପ୍ରଦାୟର ଭୀଷଣ କ୍ଷତି ଘଟାଇବେ ବୋଲି ଆଶଙ୍କାଗ୍ରସ୍ତ ହୋଇଥିଲେ ମୁସଲମାନ ସମ୍ପ୍ରଦାୟ । ତେଣୁ ସେ ସମସ୍ୟାର ସମାଧାନ ପାଇଁ ଉଭୟ ସମ୍ପ୍ରଦାୟର ଜନପ୍ରିୟ ନେତା ପଣ୍ଡିତ ଗୋପବନ୍ଧୁ ଓ ଡା: ଏକରମ ରସୁଲଙ୍କ ସାହାଯ୍ୟ କାମନା କରି ସେମାନେ କଟକରେ ଡ: ରସୁଲ୍ ଲଳିତେନ୍ଦ୍ର କୁମାର ବସୁଙ୍କୁ ପଠାଇଲେ ପୁରୀ, ଦାସ ଆପଣଙ୍କୁ ନେଇ ଆସିବେ । ନିଷ୍ପତ୍ତି ନିଆଯାଇଥିଲା ଯେ ସକାଳ ଗାଡିରେ ଦାସ ଆପଣେ ଆସିବେ ଏବଂ କଟକ ରେଲ ଷ୍ଟେସନ୍‌ରେ ଅପେକ୍ଷା କରିଥିବା ମୁସଲମାନ ନେତାମାନେ ସେହି ଡବାରେ ଚଢିବେ । ଲଳିତେନ୍ଦ୍ର କୁମାର ବସୁ ତାଙ୍କ ସେଦିନର ଅନୁଭୂତି ଲେଖିଛନ୍ତି—"ମୁଁ ପୁରୀରେ ବେଶୀ ରାତିରେ ପହଞ୍ଚି ପରଦିନ ବଡ଼ି ସକାଳୁ ତାଙ୍କ ପାଖକୁ ଗଲି । ଦେଖିଲି ଯେ ଦୁଇଦିନ ହେଲା ଆମାଶୟରେ ପଡି କଷ୍ଟ ପାଉଛନ୍ତି ଓ ଦିନ ଦିନ ପାଇଖାନା ଯାଉଛନ୍ତି । ତାଙ୍କ ଶଯ୍ୟା ପାଖରେ ପୁରୀର ଜଣେ କଂଗ୍ରେସ କର୍ମୀ ଶ୍ରୀ ବିଶ୍ୱନାଥ ପରିଡ଼ା ବସିଥାନ୍ତି । ଦାସେ ଆପଣଙ୍କୁ ମୋର ଆସିବା କାରଣ କହିବାରେ ସେ ତତ୍‌କ୍ଷଣାତ୍‌ରେ ଯିବାକୁ ବାହାରିଲେ । ବଡ଼ପାଳ ଉପବାସ ପୁଣି ଏତେ ଥର ବାଳଝାଡ଼ା, ଏଥିରେ ରେଳରେ ଯିବାକୁ ବିଶ୍ୱନାଥ ବାବୁ ଆପତ୍ତି କରିଥିଲେ । ମୋର ମଧ୍ୟ ଜିଦ୍ କରିବା ପ୍ରବୃତ୍ତି ନଥିଲା; ମାତ୍ର ଦାସେ ଆପଣେ କହିଲେ, "ହଇ ହେ ନାସ୍ତିକ ! (ଲଳିତେନ୍ଦ୍ର କୁମାର ବସୁଙ୍କୁ ପଣ୍ଡିତ ଗୋପବନ୍ଧୁ ଡ଼ାକୁଥିଲେ 'ନାସ୍ତିକ' ) ଯେଉଁଠି ଶହ ଶହ ରକ୍ତାକ୍ତ ହେବାର ସମ୍ଭାବନା ସେଠି ମୁଁ ଜଣେ ରକ୍ତ ଝାଡ଼ାରେ ପଡି ମରିଲି ନାହିଁ ହେବକି ?" ଏହା କହି ସେ ଖଦଡ଼ ଚଦର ଖଣ୍ଡିକ କାନ୍ଧରେ ପକାଇ ଖୋଲା ମୁଣ୍ଡି ନେଇ ବାହାରିଲେ । ପୁରୀଠାରୁ କଟଣୀ ମଧ୍ୟରେ ସେ ରେଳଗାଡ଼ିରେ ତିନି ଥର ପାଇଖାନା ଯାଇଥିଲେ । ବହୁ କଷ୍ଟରେ ମୁଁ ତାଙ୍କୁ ଖୋରଧା ରୋଡଠାରେ ଦୋଳ ଦହି ପିଆଇଥିଲି ।" (୨)

(୨) ତର୍ନେବ: କୋଠିକରେ ଗୋଟିଏ—ଲଳିତେନ୍ଦ୍ରକୁମାର ବସୁ, ପୃ ୫୫

ସେଠାକାର ଉଭୟ ସମ୍ପ୍ରଦାୟର ଲୋକମାନଙ୍କ ଲାଗି ଉତ୍କଳମଣିଙ୍କ ଉପସ୍ଥାନ ହିଁ ଏକମାତ୍ର କାମନା ଥିଲା । ସେ ସେଠାରେ ପହଞ୍ଚିବା ପରେ ଆଉ କୌଣସି ସମସ୍ୟା ସେତେଟା ଜଟିଳ ନଥିଲା । ସମାଧାନର ସୂତ୍ର ଆପେ ଆପେ ଖୋଲିଯାଇଥିଲା ।

କେବଳ ବର୍ତ୍ତମାନ ଉପସ୍ଥିତ ସମସ୍ୟାର ସମାଧାନ ପାଇଁ ଗୋପବନ୍ଧୁ ଚେଷ୍ଟିତ ନଥିଲେ ଓଡ଼ିଆ ଜାତିର ଭବିଷ୍ୟତ ପାଇଁ ମଧ୍ୟ ସର୍ବଦା ଚିନ୍ତିତ ରହୁଥିଲେ । ମାନବ ସମାଜରେ ଓଡିଆ ଜାତିକୁ ପ୍ରତିଷ୍ଠା କରିବା ଉଦ୍ୟମ ତାଙ୍କର ସବୁବେଳେ ଥିଲା ଚିନ୍ତାର ସାମଗ୍ରୀ । ସେଥିପାଇଁ "ଓଡିଶାର ବର୍ତ୍ତମାନ ଗତ ଓ ଭବିଷ୍ୟତ" ଶିରୋନାମାରେ ସାପ୍ତାହିକ ସମାଜର ସମ୍ପାଦକୀୟ ସ୍ତମ୍ଭରେ ମାର୍ଚ୍ଚ ୧୩ ତାରିଖ ୧୯୨୬ ମସିହା ଦିନ; ସାର୍ ଆଣ୍ଡ୍ରୁଜ୍‌ଙ୍କ ଦକ୍ଷିଣ ଆଫ୍ରିକାରେ ଥିବା ଭାରତୀୟଙ୍କ ଜୀବନାନୁଭୂତିକୁ ଉପଲକ୍ଷ୍ୟ କରି ଲେଖିଥିଲେ—"ଆଣ୍ଡ୍ରୁଜ୍ କହନ୍ତି, ଦୁଃଖ ଦାରିଦ୍ର୍ୟ ଓଡିଶା ଲୋକଙ୍କ ଦେହକୁ କେବଳ ବାଧୁଛି, ଆତ୍ମାକୁ ବାଧା ଦେଇନାହିଁ । ଏହାର ଅର୍ଥ ଏହି ଯେ ଓଡ଼ିଶାର ଲୋକେ ଏ ପର୍ଯ୍ୟନ୍ତ ଆପଣାର ମନୁଷ୍ୟତା ହରାଇ ନାହାନ୍ତି । ସେମାନଙ୍କ ମନ ଦୃଢ଼ ଅଛି; ଆତ୍ମା ଶୁଦ୍ଧି ଅଛି । ଯଥାର୍ଥରେ ଏହାହିଁ ହେଲେ ହୋଇଥାନ୍ତା ! ଦୁଃଖର କଥା, ଓଡିଶା ଲୋକ ଦାରିଦ୍ର୍ୟ ଚାପରେ ମନୁଷ୍ୟତା ହରାଇ ସାରିଲେଣି । ଏପରିକି, ଓଡ଼ିଶାରେ ଯେଉଁମାନେ ସଙ୍ଗତିସମ୍ପନ୍ନ, ସେମାନେ ଆପଣାର ଆତ୍ମାକୁ ବିକିଦେଇ ସାରିଲେଣି । ଓଡିଶା କେତେଠାରେ ଅକାତରରେ କି ଘୋର ଲାଞ୍ଛନା ସହୁଛି, ତାହାଁର ସୀମା ନାହିଁ । ଧନ ଆଶାରେ କେତେ ଓଡ଼ିଆ ମାନ-ଅପମାନକୁ ପଛରେ ପକାଇ ଦେଇଛନ୍ତି । ନିଜର ମନୁଷ୍ୟତା ଦେଖାଇବାର ବଳ ଓଡିଆ ଜାତିର କ୍ରମେ କ୍ଷୀଣ ହୋଇ ଆସିଲାଣି । ତା ନହୋଇଥିଲେ କି ରେଳରେ ସେ ଏତେ ଲାଞ୍ଛନା ଓ ନର୍ଯ୍ୟାତନା ସହୁଥାଆନ୍ତା ? ଜମିଦାରର ଏତେ ଜୁଲମ୍ ମୁଣ୍ଡ ପୋତି ସେ ଭୋଗୁଥାଆନ୍ତା ? ଓଡ଼ିଆ ଗାଳିମାଡ ଖାଇଲେ ସୁଦ୍ଧା ଖୋସାମଦ୍ କରିବାକୁ ତିଆର ହେଲେଣି । ଓଡିଶାର ଏ ଦୁର୍ଗତି ଦେଖିଲେ ଏ ଜାତିର ଭବିଷ୍ୟତ ବିଷୟରେ ପ୍ରାଣରେ ଘୋର ନୈରାଶ୍ୟ ଆସେ । ଏ ଦେଶର ଜମିଦାର, ରଜା, ପ୍ରଜା, ଶିକ୍ଷିତ, ଅଶିକ୍ଷିତ

ସମସ୍ତଙ୍କର ଉତ୍କଳୀ ଅଧିକ ଏହି ଦଶା ଏବଂ ପ୍ରତ୍ୟେକେ ପ୍ରତ୍ୟେକଙ୍କର ଅଧଃପତନରେ ସହାୟତା କରୁଛନ୍ତି । ଏ ଜାତିକୁ ଉଠାଇବାକୁ ହେଲେ ଏହାର ଆତ୍ମସମ୍ମାନଜ୍ଞାନ ଜଗାଇବାକୁ ହେବ । ଧନ ଅପେକ୍ଷା ମାନ ବଡ଼ । ଦରିଦ୍ର ହେଲେ ସୁଦ୍ଧା ମନୁଷ୍ୟତା ଯେ ରଖିଛି, ସେହି ଏକା ଧନ୍ୟ—ଏଭାବ ସମସ୍ତଙ୍କ ହୃଦୟରେ ଦେବାକୁ ହେବ । ଦକ୍ଷିଣ ଆଫ୍ରିକାରେ ସେ ବନ୍ଧୁଙ୍କ କଥା ଆଣ୍ଡ୍ରୁଜ୍ ଲେଖିଛନ୍ତି, "ତାଙ୍କର ମନୁଷ୍ୟତା ନଷ୍ଟ ହୋଇଛି; ମୁଁ ଓଡ଼ିଶାର ଅନେକସ୍ଥଳେ, ସେ ବୋଧଶକ୍ତି ଲୋପ ପାଇଲାଣି । ଅବସ୍ଥା ଶୋଚନୀୟ । ଏଥିରୁ ଉଠେଇବା ଲାଗି ବହୁତ ଆୟୋଜନ, ଅକ୍ଳାନ୍ତ ଉଦ୍ୟମ ଏବଂ ଅମୂଲ୍ୟ ଐଶ୍ବରିକ ପ୍ରେରଣା ଲୋଡ଼ା । ଉତ୍କଳ ଯୁବକ ଗୀର ହୃଦୟ ଧରି ଶତ ଶତ ସଂଖ୍ୟାରେ ଆତ୍ମୋତ୍ସର୍ଗ କଲେ ତ ଏ ଜାତିର ଭବିଷ୍ୟତ ଅଛି; ନହେଲେ ମାନବ ସମାଜରେ ଓଡ଼ିଆ ଜାତିର ସ୍ଥାନ ରହିବ ନାହିଁ ।"

ତାହା କେବଳ ସମାଜର ସମ୍ପାଦକୀୟ ନୁହେଁ । ତାହା ତାଙ୍କ ଅନ୍ତରର ଗଭୀରତମ ପ୍ରଦେଶର ନିର୍ଯ୍ୟାସ ।

ପଣ୍ଡିତ ଗୋପବନ୍ଧୁ ଓଡ଼ିଶାରେ "ସ୍ୱରାଜ୍ୟ"ର ବାର୍ତ୍ତା ପ୍ରଚାର କରିବା କାର୍ଯ୍ୟକ୍ରମକୁ ମଧ୍ୟ ଜନସେବାର ଏକ ମାଧ୍ୟମ ବୋଲି ଗ୍ରହଣ କରିନେଇଥିଲେ ସେତେବେଳକୁ । କଂଗ୍ରେସ ଅନୁଷ୍ଠାନ ସହିତ ସଂପୃକ୍ତ ଥିବା ନେତୃବୃନ୍ଦ ବୃହତ୍ତର ଜାତିପ୍ରୁ ସେବା କରିବା ଉପଲକ୍ଷ୍ୟରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଆନ୍ଦୋଳନକୁ ସେତେଟା ଗୁରୁତ୍ୱ ଦେଉ ନଥିଲେ । ସେମାନେ ମନେ କରୁଥିଲେ ଦେଶର ସ୍ୱରାଜ୍ୟ ପାଇସାରିବା ପରେ ସେ ସମସ୍ୟା ଆପେ ଆପେ ସମାଧାନ ହୋଇଯିବ । ତେଣୁ କଂଗ୍ରେସର ବାର୍ତ୍ତା ପ୍ରଚାର ଏବଂ "ସ୍ୱରାଜ୍ୟ" ଲାଗି ସମସ୍ତ କର୍ମଯୋଜନା କରୁଥିଲେ କଂଗ୍ରେସୀ କର୍ମୀଗଣ । ସେହି ଉଦ୍ଦେଶ୍ୟରେ ଜାତିର ଜନକ ମହାତ୍ମା ଗାନ୍ଧୀ ଓଡ଼ିଶା ପରିଦର୍ଶନରେ ଆସିଥିଲେ ସେଇବର୍ଷ, ଠିକ୍ ପୁରୀର ବନ୍ୟା ପରେ ପରେ ।

ଗାନ୍ଧିଜୀ ଓଡ଼ିଶା ଆସିବା ରାସ୍ତାରେ ମୟୂରଭଞ୍ଜର ରାଜାଙ୍କର ଭୂୟସୀ ପ୍ରଶଂସା କରି ଏକ ଲେଖା ପ୍ରକାଶ କରିଥିଲେ । ସେତେବେଳେ

"ୟୁଙ୍ଗ୍ ଇଣ୍ଡିଆ" ନାମରେ ଏକ ସମାଚ୍ଚାର ପତ୍ର ତାହାଙ୍କ ସଂପାଦନାରେ ପ୍ରକାଶ ପାଉଥିଲା ଏବଂ ଗାନ୍ଧିଜୀ ଯେଉଁଆଡେ ଗଲେ ମଧ୍ୟ ସେଥିପାଇଁ ସ୍ୱମତ ଲେଖା ପଠାଉଥିଲେ । ଉକ୍ତ ଲେଖା ଗୋପବନ୍ଧୁଙ୍କ ଦୃଷ୍ଟିରେ ପଡ଼ୁଥିଲା ଏବଂ ସେ ତାହାକୁ ଗାନ୍ଧିଜୀଙ୍କ ଏକ ପ୍ରମାଣପତ୍ର ବୋଲି ମନେ କରୁଥିଲେ ।

ସେଇ କାରଣରୁ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ ତଥା ପୁରୀ କମ୍ୟା ସନ୍ନ୍ୟାସୀ ଆଗମନ ସମ୍ବନ୍ଧ ଗୋପବନ୍ଧୁ ସେତେଟା ସନ୍ତୁଷ୍ଟ ରହିପାରି ନଥିଲେ । ଏପରି କି ପୁରୀରେ ଅନୁଷ୍ଠିତ ହେବାକୁ ଥିବା ସଭାରେ ସେ ଯୋଗ ଦେଉ ନଥିବା କଥା ମଧ୍ୟ ଶୁଣାଯାଏ ପ୍ରଚ୍ଛତ ହୋଇଥିଲା । ସାଧାରଣଙ୍କ ହୃଦୟରେ ସ୍ଥାନ ପାଇଥିବା ଗୋପବନ୍ଧୁଙ୍କ ଗାନ୍ଧିଜୀଙ୍କ ସଭାରେ ଅନୁପସ୍ଥିତ ଜନଗଣଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ "ପୁରୀରେ ଯେଉଁଠାରେ ନରେନ୍ଦ୍ର ଆଉ ବାସ୍ତା ବଡ଼ଦାଣ୍ଡରେ ମିଶିଛି ସେହିଠାରେ ସଭାପାଇଁ ବ୍ୟବସ୍ଥା ହୋଇଥିଲା । କିନ୍ତୁ ଗୋପବନ୍ଧୁ ବାବୁଙ୍କୁ ନ ଡାକିବାର ପ୍ରଚ୍ଚାର ହୋଇ ଯାଇଥିବାରୁ ସେଠାକୁ ଠିକ୍ ସମୟରେ (ଅର୍ଥାତ୍ ଅପରାହ୍ଣ ୫ଟା ବେଳକୁ) କେହି ଆସି ନଥିଲେ । ଗାନ୍ଧୀ ସେଠାରେ ଘଣ୍ଟାଏ ଅପେକ୍ଷା କଲେ । ଶେଷକୁ ଗୋପବନ୍ଧୁ ବାବୁ ଓ ଜଗବନ୍ଧୁ ବାବୁ ପ୍ରଭୃତି ସହରକୁ ଯାଇ ପଚିଶ ଜଣ ସହରର ପ୍ରଧାନ ପ୍ରଧାନ ଲୋକଙ୍କୁ ଡାକି ଆଣିଲେ । ମନେ ରଖିବାର ଅଛି, ଏହି ଗାନ୍ଧୀ ୧୯୨୧ ରେ ଆସିଲାବେଳେ ଅତ୍ୟନ୍ତ ଲୋକ ଗହଳି ହୋଇଥିଲା । ପୁରୀ ଜିଲ୍ଲାର ସବୁଆଡ଼ୁ ଲୋକେ ଉପସ୍ଥିତ ଥିଲେ । ସେହି ସହରରେ ନରେନ୍ଦ୍ରଠାରେ ମାତ୍ର ପଚିଶ ଜଣ ଲୋକଧରି ଗାନ୍ଧୀ ପ୍ରଥମେ ସଭା ଆରମ୍ଭ କଲେ । ସଭା ହେବାରୁ ପରେ କିଛି ଲୋକ କ୍ରମେ ଆସି ଉପସ୍ଥିତ ହେଲେ; କିନ୍ତୁ ସେ ସଂଖ୍ୟା ସେପରି କିଛି ଉଲ୍ଲେଖଯୋଗ୍ୟ ନୁହେ ।" (୧)

"ରଖିଦେ ତୋ ଗାନ୍ଧୀ କି" ବୋଲି ଅଡ଼ି ବସିଥିବା ଗୋପବନ୍ଧୁଙ୍କ ମାନଭଞ୍ଜନ କରିଥିଲେ ନିଜେ ଗାନ୍ଧିଜୀ । ତେଣୁ ଗୋପବନ୍ଧୁ ପୁରୀ ସଭାରେ ଯୋଗଦାନ କରିଥିଲେ ।

---

(୧) ଆତ୍ମଜୀବନୀ, ପୃ ୧୬୬ – ୧୬୭

ସେଇ ୧୯୨୫ ମସିହାରେ ଅନ୍ୟାନ୍ୟ କେତେକ ସୁବିଧା ଦୃଷ୍ଟିରୁ "ସମାଜ" ପ୍ରେସ୍‌କୁ ସତ୍ୟବାଦୀରୁ ପୁରୀକୁ ଅଣାଯାଇଥିଲା ଏବଂ ପୁରୀର ପଥିକିଆ ପାଠକରୁ ସମାଜ ପ୍ରୋତ୍ସାହନ ଲାଭ କରିଥିଲା । ଭାରତୀୟ ରାଜନୈତିକ ଆକାଶରେ ସେତେବେଳେ ହିନ୍ଦୁ ମହାସଭା ନାମରେ ଗୋଟାଏ ରାଜନୈତିକ ଦଳଥିଲା । ୧୯୨୭ ମସିହାରେ ତାର ଓଡ଼ିଶା ଶାଖାର ଦାୟିତ୍ୱ ଗ୍ରହଣ କରିଥିଲେ ଗୋପବନ୍ଧୁ । ତେବେ ଭାରତୀୟ ରାଜନୈତିକ କ୍ଷେତ୍ରରେ ବିଶେଷ ଖ୍ୟାତି ଲାଭ କରିଥିବା ଲାଲା ଲଜପତ୍ ରାୟ ଥିଲେ ଭାରତସେବକ ସମାଜର ସଭାପତି ସେ ସୌଭାଗ୍ୟକ୍ରମେ ଓଡ଼ିଶା ଆସିଥିଲେ ସେତେବେଳକୁ । ଗୋପବନ୍ଧୁଙ୍କ ବହୁମୁଖୀ ପ୍ରତିଭା ତାହାଙ୍କୁ ଆକୃଷ୍ଟ କରାଇ ପାରିଥିବା ଯୋଗୁଁ ସେ ପଣ୍ଡିତ ଗୋପବନ୍ଧୁଙ୍କୁ ଦିଲ୍ଲୀ ନିମନ୍ତ୍ରଣ କରି ନେଇଥିଲେ ଏବଂ ଭାରତସେବକ ସମାଜ (Servants of the People Society) ର ଉପସଭାପତି ରୂପେ ଦାୟିତ୍ୱ ଗ୍ରହଣ କରି କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ନିର୍ବାହ କରନ୍ତୁ ବୋଲି ତାଙ୍କର ଇଚ୍ଛା ପ୍ରକାଶ କରିଥିଲେ ।

ଦେଶସେବକ ଗୋପବନ୍ଧୁ ଦେଶମାତୃକାର ସେବାଲାଗି ମିଳୁଥିବା ଆଉ ଏକ ସୁଯୋଗକୁ ପ୍ରତ୍ୟାଖ୍ୟାନ କରନ୍ତେ ବା କାହିଁକି ? ସେଥିପାଇଁ ସେ ନିର୍ବାଚିତ ହୋଇଥିଲେ ।

ଭାରତସେବକ ସମାଜର ଏକ ବାର୍ଷିକ ଅଧିବେଶନ ୧୯୨୮ ମସିହାରେ ଲାହୋର (ବର୍ତ୍ତମାନ ପାକିସ୍ଥାନଠାରେ) ଅନୁଷ୍ଠିତ ହେଉଥିବା ଦୃଷ୍ଟିରୁ ଗୋପବନ୍ଧୁ ଅପ୍ରେଲ ମାସରେ ସେଠାକୁ ଯାତ୍ରା କରିଥିଲେ । ସେତିକିବେଳକୁ ହିଁ ତାଙ୍କ ସ୍ୱାସ୍ଥ୍ୟରେ ଅବନତି ଘଟିବା ଆରମ୍ଭ ହୋଇ-ଯାଇଥିଲା । ସେଠାରେ ଉପସଭାପତି ଭାବେ ଅଧିବେଶନରେ ଅଂଶ ଗ୍ରହଣ କରି କଲିକତା ଦେଇ ଫେରିଲାବେଳକୁ ଟାଇଫଏଡ୍ ଜ୍ୱରରେ ଆକ୍ରାନ୍ତ ହୋଇପଡ଼ିଥିଲେ । ସେଇ ଅବସ୍ଥାରେ ହିଁ ସେ ବୁଲି ଆସିଥିଲେ ସତ୍ୟବାଦୀ । ସତ୍ୟବାଦୀରେ କିଛି ଦିନ ରହିବା ପରେ ପ୍ରାୟ ମଇ ମାସର ଅଧାବେଳକୁ ଜ୍ୱରରୁ ମୁକ୍ତି ପାଇଥିଲେ । କିନ୍ତୁ ସମ୍ପୂର୍ଣ୍ଣ ରୋଗମୁକ୍ତ ହେବା ପୂର୍ବରୁ କିଛିଟା

ବିଶ୍ରାମ ନନେଇ ପୁଣି ଦୁର୍ବଳ ଶରୀରରେ କାର୍ଯ୍ୟକ୍ଷେତ୍ରକୁ ଲମ୍ଫ ଦେଇଥିଲେ । ସେ ଯେଉଁବେଳେ ସମ୍ବାଦ ପାଇଥିଲେ ଯେ କଲିକତାରେ ତାଙ୍କର ହାତଗଢ଼ା ଲୁଗାକଳ ଶ୍ରମିକ ସଂଘରେ କିଛି ଅଶାନ୍ତି ଉପୁଜିଛି, ସେ ଆଉ ଶାନ୍ତିରେ ରହିପାରି ନଥିଲେ ।

ଯେତେବେଳେ ଇଂରେଜ ସରକାରଙ୍କ ସହିତ ସହଯୋଗ ନ କରିବା ଲାଗି କଂଗ୍ରେସ ପକ୍ଷରୁ ଆହ୍ୱାନ ଦିଆଯାଇଥିଲା, ସେତେବେଳେ ଗୋପବନ୍ଧୁ କଲିକତା ବଡ଼ ବଜାରରେ ଥିବା ଓଡ଼ିଆମାନଙ୍କ ସ୍ୱାର୍ଥରକ୍ଷା ଦୃଷ୍ଟିରୁ ଏକ ସଂଘ ଗଠନ କରିଥିଲେ । ତାର ଇତିହାସ ବଡ଼ କୌତୂହଳପୂର୍ଣ୍ଣ । ତାଙ୍କ ବିଶ୍ୱସ୍ତ ଭୃତ୍ୟ ରାମ ବାରିକଙ୍କ ଉକ୍ତି ଅନୁଯାୟୀ, "୧୯୨୧ ସାଲ ଦଶହରା ଆଗରୁ ବିଲାତି ଲୁଗା ବର୍ଜନ ପ୍ରଚାର କରିବାକୁ ସେ କଲିକତା ଯାଇଥିଲେ । ମୁଁ ବି ଯାଇଥିଲି । ସେ ଘଟଣା ତାଙ୍କ ଜେଲ ଯିବା ଆଗରୁ । କଲିକତାରେ 'ବିଲାତି ପଟି' ବୋଲି ବିଲାତି ଲୁଗା ବିକ୍ରି ପାଇଁ ଗୋଟିଏ ପେଣ୍ଠ ଥାଏ । ଗୁଡ଼ାଏ ଦୋକାନ । ମାରୁବାଡ଼ିମାନେ ତା ମାଲିକ । ପଣ୍ଡିତ ଗୋପବନ୍ଧୁ ସେମାନଙ୍କୁ କହିଲେ "ଆଉ ବିଲାତି ଲୁଗା ଆଣନାହିଁ । ସେମାନେ ତାଙ୍କ କଥାରେ କାନ ଦେଲେ ନାହିଁ ।" ସେଇଠୁ ସେ ଓଡ଼ିଆ ଶ୍ରମିକଙ୍କୁ କହିଲେ, "ତୁମେ ଜାହାଜରୁ ବିଲାତି ଲୁଗା ଓହ୍ଲାଇ ମାରୁବାଡ଼ିମାନଙ୍କ ଗୋଦାମକୁ ବୋହି ଆଣୁଚ, ଆଉ ଆଣ ନାହିଁ; ବନ୍ଦ କର ।"

ସେମାନେ ମାରୁବାଡ଼ିଙ୍କ ପାଇଁ ଆଉ ବିଲାତି ଲୁଗା ବୋହିଲେ ନାହିଁ । ବେପାରୀ ପ୍ରତିଶୋଧ ନେଲେ । କେତେ ଜଣ ମଜୁରିଆଙ୍କୁ ପାଞ୍ଚ ଆଇନରେ ପକାଇ ଜେଲ ଦିଆଇଲେ । ସାତଦିନ ସେମାନେ ଜେଲରେ ରହିଲେ । ତଥାପି ଓଡ଼ିଆ ଶ୍ରମିକମାନେ ଲୁଗା ଗଣ୍ଠିଲି ଉଠାଇଲେ ନାହିଁ, କାରଖାନାରେ କାମ କଲେ ନାହିଁ, ଆଲୁଅ ଜଳିଲା ନାହିଁ, ଘର କାମ ବନ୍ଦ, କାରବାର ବନ୍ଦ । ହୋଇପଡ଼ିଛେ ତାଙ୍କ ରୋଜଗାର ବି ବନ୍ଦ । ଜୋର୍ ଉତ୍ତେଜନା ଖେଳୁଥାଏ । କଲିକତାରେ ଚହଳ ପଡ଼ିଥାଏ ଗୋପବନ୍ଧୁ ଓଡ଼ିଆମାନଙ୍କ ରାଜା । ରାଜା ଅର୍ଡର ଦେଇଛି ତେଣୁ ସେମାନେ ବିଲାତି

ଲୁଗା ଓହ୍ଲାଉ ନାହାନ୍ତି । କଲିକତା ବୁଝିବାକୁ ଆରମ୍ଭ କରିଥାଏ ଓଡ଼ିଆ ଶ୍ରମିକର ଶକ୍ତି କେତେ । ସେ ଏକଜୁଟ ହେଲେ କଣ କରିପାରେ ।

ଶ୍ରମିକଙ୍କ ଭିତରେ ବିପୁଳ ଉତ୍ସାହ ଖେଳି ଯାଇଥାଏ । ଭଲେଣ୍ଟିଅର ସଂଗ୍ରହ ଚାଲିଥାଏ । ଏ ଆନ୍ଦୋଳନରେ ଦେଶବନ୍ଧୁ ଚିତ୍ତରଂଜନ ଦାସ ମଧ୍ୟ ସାହାଯ୍ୟ କରୁଥାନ୍ତି । ପଣ୍ଡିତ ଗୋପବନ୍ଧୁ ନିଷ୍ପତ୍ତି କଲେ ଜେଲ ଯାଉଥିବା ଶ୍ରମିକମାନେ ଯେମିତି ଜେଲରୁ ଖଲାସ ହେବେ ସେମିତି ସେମାନଙ୍କୁ ଗଙ୍ଗାର ଜଗନ୍ନାଥ ଘାଟକୁ ପ୍ରାୟଶ୍ଚିତ୍ତ କରାଇବାକୁ ନିଆଯିବ । ସେଦିନ ଆସିଲା ଲୋକେ ଏକ ସପ୍ତାହ ପରେ ଜେଲରୁ ଖଲାସ ହେଲେ । ତା ପରେ ଜଗନ୍ନାଥ ଘାଟକୁ ନିଆଯିବେ । କଲିକତା ସହରରେ ହୁଲସ୍ଥୁଲ ପଡିଯାଇଥାଏ । ବଡ଼ ବଜାରରେ ପଚିଶି ହଜାର ଲୋକଙ୍କ ସମାଗମ । ସରକାରଙ୍କ ତରଫରୁ କଟକଣା ହୋଇ ସବୁ ଯାନବାହନ ବନ୍ଦ । ବାଟର ଦୁ' କଡରେ ଦୁଇଧାଡ଼ି ହୋଇ ପାଞ୍ଚଶହ ଘୋଡା ସବାର ଆର୍ମଡ୍ ପୋଲିସ ଠିଆ ହୋଇଥାଆନ୍ତି ।

ସେତେବେଳେ ପଣ୍ଡିତ ଗୋପବନ୍ଧୁ ଲୋକଙ୍କୁ ବୁଝାଉଥାନ୍ତି, "ଭାଇମାନେ ! ଦେଖ ସରକାରଙ୍କ ଫାନ୍ଦ । ଏମାନଙ୍କୁ ଚାହିଁ ଧୀରସ୍ଥିର ଭାବରେ କାର୍ଯ୍ୟକର । ବିଚଳିତ ହୁଅ ନାହିଁ ।" ଲୋକେ ମଧ୍ୟ ଧୀରସ୍ଥିର ହୋଇ ଠିଆ ହୋଇଥାନ୍ତି । ଟିକିଏ କେଉଁଠି ବିଶୃଙ୍ଖଳା ନାହିଁ । ଲୋକେ ମହାତ୍ମା ଗାନ୍ଧୀ ଓ ଗୋପବନ୍ଧୁ ଦାସଙ୍କ ନାଁ ଧରି ଧ୍ୱନି ଦେଉଥାନ୍ତି । ବାହାରିଥିଲେ ସକାଳ ୮ଟା ବେଳେ । ଘାଟରେ ଲୋକଙ୍କୁ ଖିଅର କରାଇ ନୂଆଁ ଲୁଗା ପିନ୍ଧାଇ ଲେଉଟାଇ ଆଣିଲା ବେଳକୁ ୨ଟା ବାଜିଥିଲା ।

ତା ପରେ ହାଲିଡେ ପାର୍କରେ ସଭା ହେଲା । କଲିକତାରେ ଓଡ଼ିଆ ଅଫିସ କରିବା ନିଷ୍ପତ୍ତି ହେଲା ଓ ଭବାନୀପୁରରେ ସେ ଅଫିସ ଖୋଲା ହେଲା । କଲିକତାରେ ଥିବା ଓଡ଼ିଆଙ୍କର ଗୋଟିଏ ଜନଗଣନା (ସେନ୍‌ସେସ) କରାଯିବାକୁ ନିଷ୍ପତ୍ତି ହେଲା । ମୁଣ୍ଡ ଗଣତିରେ ସେମାନେ ହେଲେ ଦେଢ଼ଲକ୍ଷ । ପ୍ରତି ଶନିବାର ଦିନ ପ୍ରତ୍ୟେକ ଶ୍ରମିକ ଓଡ଼ିଆ

ଶ୍ରମିକ ସଙ୍ଘ ପାଇଁ ପଇସାଟିଏ ଦେବେ । ସେଇଥିରେ ଅଫିସ ଶୃଙ୍ଖଳା । ଲୋକଙ୍କ ଭଲମନ୍ଦ ବୁଝାଗଲା ।

ତାଙ୍କର ନିଜ ହାତଗଢ଼ା ସେହି ଅନୁଷ୍ଠାନର ଶ୍ରମିକମାନଙ୍କ ମଧ୍ୟରେ ଅସନ୍ତୋଷ ପ୍ରକାଶ ପାଇଛି । ସେ ନଗଲେ ନଚଳେ ବୋଲି ଖବର ପାଇଥିଲେ ଠିକ୍ ଜ୍ୱର ଛାଡ଼ିବାର ଅଳ୍ପଦିନ ମଧ୍ୟରେ । ସେଇ ଭଗ୍ନସ୍ୱାସ୍ଥ୍ୟ ନେଇ ସେ କଲିକତା ଯାଇଥିଲେ । ପରିଶ୍ରମର ପରିଣାମ ସ୍ୱରୂପ ଜ୍ୱର ପୁଣି ଲେଉଟିଥିଲା ।

ସେଇ ଜ୍ୱର ହିଁ ଥିଲା ତାଙ୍କ ପାଇଁ କାଳଜ୍ୱର ।

